

# ଶ୍ରୀଜଗନ୍ନାଥ ଭଜନ
# ଜଣାଣ ଓ ଚଉତିଶା

# ଶ୍ରୀଜଗନ୍ନାଥ ଭଜନ, ଜଣାଣ ଓ ଚଉତିଶା





ସୂଚନା ଓ ଲୋକ ସଂପର୍କ ବିଭାଗ
ଓଡ଼ିଶା ସରକାର

ସଂଗ୍ରାହକ : ରଚନା ଶାଖା     ମୂଲ୍ୟ : ଟ.୧୦.୦୦

# ସୂଚୀ



# ପ୍ରଳୟପୟୋଧିଜଳେ

ଜୟଦେବ



ପ୍ରଳୟପୟୋଧିଜଳେ ଧୃତବାନସି ବେଦମ୍
ବିହିତବହିତ୍ରଚରିତ୍ର ମଖେଦମ୍,
କେଶବ !
ଧୃତମୀନଶରୀର, ଜୟଜଗଦୀଶ ହରେ ।।

କ୍ଷିତିରତିବିପୁଳତରେ ତବ ତିଷ୍ଠତି ପୃଷ୍ଠେ,
ଧରଣିଧରଣକିଣଚକ୍ରଗରିଷ୍ଠେ
କେଶବ !
ଧୃତକଚ୍ଛପରୂପ, ଜୟ ଜଗଦୀଶ ହରେ ।।

ବସତି ଦଶନଶିଖରେ ଧରଣୀ ତବ ଲଗ୍ନା
ଶଶିନି କଳଙ୍କକଳେବ ନିମଗ୍ନା
କେଶବ !
ଧୃତଶୂକରରୂପ, ଜୟ ଜଗଦୀଶ ହରେ ।।

ତବ କରକମଳବରେ ନଖମଦ୍‌ଭୁତଶୃଙ୍ଗମ୍
ଦଳିତହିରଣ୍ୟକଶିପୁତନୁଭୃଙ୍ଗମ୍
କେଶବ !
ଧୃତନରହରିରୂପ, ଜୟ ଜଗଦୀଶ ହରେ ।।

ଛଳୟସି ବିକ୍ରମଣେ ବଳିମଦ୍‌ଭୁତବାମନ
ପଦନଖନୀରଜନିତଜନପାବନ
କେଶବ !
ଧୃତବାମନରୂପ, ଜୟ ଜଗଦୀଶ ହରେ ।।







କ୍ଷତ୍ରିୟରୁଧିରମୟେ ଜଗଦପଗତପାପମ୍
ସ୍ନପୟସି ପୟସି ଶମିତଭବତାପମ୍
କେଶବ !
ଧୃତଭୃଗପତିରୂପ, ଜୟ ଜଗଦୀଶ ହରେ ।।

ବିତରସି ଦିକ୍ଷୁ ରଣେ ଦିକ୍‌ପତିକମନୀୟମ୍
ଦଶମୁଖ ମୌଳିବଳିଂ ରମଣୀୟମ୍
କେଶବ !
ଧୃତରାମଶରୀର, ଜୟ ଜଗଦୀଶ ହରେ ।।
ବହସି ବପୁଷି ବିଶଦେ ବସନଂ ଜଳଦାଭମ୍
ହଳହତିଭୀତିମିଳିତଯମୁନାଭମ୍
କେଶବ !
ଧୃତହଳଧରରୂପ, ଜୟ ଜଗଦୀଶ ହରେ ।।

ନିନ୍ଦସି ଯଜ୍ଞବିଧେରହହ ଶ୍ରୁତିଜାତମ୍
ସଦୟହୃଦୟ ଦର୍ଶିତପଶୁଘାତମ୍
କେଶବ !
ଧୃତବୁଦ୍ଧଶରୀର, ଜୟ ଜଗଦୀଶ ହରେ ।।

ମ୍ଲେଚ୍ଛନିବହ ନିଧନେ କଳୟସି କରବାଳମ୍
ଧୂମକେତୁମିବ କିମପି କରାଳମ୍
କେଶବ !
ଧୃତକଳ୍କିଶରୀର, ଜୟ ଜଗଦୀଶ ହରେ ।।

ବେଦାନୁଦ୍ଧରତେ ଜଗନ୍ତିବହତେ ଭୂଗୋଳମୁଦ୍‌ବିଭ୍ରତେ
ଦୈତ୍ୟଂ ଦାରୟତେ ବଳିଂ ଛଳୟତେ କ୍ଷତ୍ରକ୍ଷୟଂ କୁର୍ବତେ ।
ପୌଲସ୍ତ୍ୟଂ ଜୟତେ ହଳଂ କଳୟତେ କାରୁଣ୍ୟମାତନ୍ୱତେ
ମ୍ଲେଚ୍ଛାନ୍‌ମୂର୍ଚ୍ଛୟତେ ଦଶାକୃତିକୃତେ କୃଷ୍ଣାୟ ତୁଭ୍ୟଂ ନମଃ ।





# ଜୟ ନୀଳାଚଳ ନାଥ

ସାରଳା ଦାସ



ଜୟ ନୀଳାଚଳ ନାଥ ଅଗତି ତାରଣ
ଜୟ ରମାପତି ପ୍ରଭୁ ମାନ ଉଦ୍ଧାରଣ

ଆହେ କଳାକର ମୁଖ ପାଣ୍ଡବ ରକ୍ଷକ
ସେ ମୁଖ ଦର୍ଶନେ ପାପ ନ ରହଇ ପାଖ

ବଡ଼ ଦେଉଳେ ବସିଛ ହୋଇ ବକ୍ର ସେହ୍ନା
ପତିତପାବନ ବୋଲି ଉଡ଼ାଉଛ ବାନା ।

ମୁଁ ପତିତ ମୋ ଗୁହାରି ଶ୍ରବଣେ ଅକ୍ଷମ
ଅଜାମିଳଠାରୁ ମୁଁ କି ଅଟଇ ଅଧମ ?

ତାହାକୁ ତାରିଲ ପ୍ରଭୁ କଟାକ୍ଷ ମାତ୍ରରେ
ସେହିପରି ଦୃଷ୍ଟି ପଡୁ ମୋ' ଉପରେ ଥରେ

ବାଟ ଖରଚକୁ ମୋର କିଛି ନାହିଁ ଧନ
ତୁମେ ହିଁ ସମ୍ବଳ ମୋର ରଙ୍କର ରତନ ।

ଅଣଚାଶ ବେଳକୁ ଭରସା କେହି ନାହିଁ
ତୁମ୍ଭେ ଉଦ୍ଧାରନ୍ତା ଅଟ ପ୍ରଭୁ ଭାବଗ୍ରାହୀ

ଇଚ୍ଛାମୟ ହରି ତୁମ ମହିମା ଅସୀମ
ଦ୍ରବଗଛ କରିପାର ଭୟଙ୍କର ଦ୍ରୁମ

ତୁମ୍ଭର କୃପାରେ ପଙ୍ଗୁ ଲଙ୍ଘିପାରେ ଗିରି
ତୁମର ବଳେ କପିଏ ଗଲେ ସିନ୍ଧୁ ତରି ।

ତୁମ୍ଭ ମହିମା ବର୍ଣ୍ଣନେ ଅଛି କା' ଶକତି
ସାରଳା ଦାସ ମାଗଇ ହେ ପ୍ରଭୁ ମୁକତି ।









# ଜୟ ଜୟ ଜଗନ୍ନାଥ

*ସାରଳା ଦାସ*

ଜୟ ଜୟ ଜଗନ୍ନାଥ ଜଗତ କାରଣ ।
ଜୟ ନୀଳଗିରିବାସୀ ଭକତ ଜୀବନ ।।

ଭକତଙ୍କ ହିତେ ହସ୍ତେ ଚକ୍ର ଧର ସଦା ।
ତାଙ୍କର ଅଭୀଷ୍ଟ ପ୍ରଭୁ କରିଦିଅ ପଦା ।।

ତୁମ୍ଭେ କରୁଣା ନକଲେ ହେ କରୁଣାସିନ୍ଧୁ ।
ତରି ନ ପାରନ୍ତି ନରେ ଏହି ଭବବନ୍ଧୁ ।।

ଆହାପ୍ରଭୁ ଜଗନ୍ନାଥ ! କିଦୟା ଭକତେ ।
ସର୍ବଦା ଅନାଇ ଥାଅ ତାଙ୍କୁ କୃପା ନେତ୍ରେ ।।

ମୁଁ ତୁମ୍ଭ ପଦକିଙ୍କର ହେ ନୀଳାଦ୍ରି ନାଥ ।
ତୁମ୍ଭ ବିନୁ ଆଶ୍ରା କେହି ନାହିଁ ମୁଁ ଅର୍କ୍ଷିତ ।।

ସାରଳା ଦାସ ମୋ' ନାମ ତବ ଭାବ ଭାବି ।
ଭାରତ ରଚନା କରି ବୋଲାଉଛି କବି ।।





# ଚକାନୟନ ହେ ...

*ମାଧବୀ ଦାସୀ*

ଚକାନୟନ ହେ ! ଜଗୁ ଜୀବନ ଶ୍ରୀହରି
କାତରେ ଜଣାଣ କରୁଛି ଛାମୁରେ
ଶୁଣ ପ୍ରଭୁ ଶ୍ରୁତି ଡେରି ।। ଘୋଷା ।। ୦ ।।

କେତେ ସଂକଟୁ କାହାକୁ ରଖି ନାହଁ ଦୟାଳୁ ସାରଙ୍ଗଧାରୀ
ତା' ବର୍ଣ୍ଣି ବସିଲେ ପୋଥିକର ପାଠ କି ବର୍ଣ୍ଣିବ ଏ ପାମରୀ ।। ୧ ।।

ଅହଲ୍ୟା ତାରଣ ଦ୍ରୌପଦୀ କଷଣ ହେଳେ ଦେଇଛ ନିବାରି
ମୃଗୁଣୀ ଆରତ ଜାଣି ଜଗନ୍ନାଥ ବିପଦୁଁ ଦେଲ ଉଧାରି ।। ୨ ।।

ଶବରୀକି ଦିବ୍ୟ ଗତି ଯାଚି ଦେଲ ତା' ଉଚ୍ଛିଷ୍ଟ ଭକ୍ଷି କରି
ମୀରା କରମାଙ୍କ ଭାବେ ହୋଇ ରଙ୍କ ସ୍ଥାନ ଦେଲ ବ୍ରଜପୁରୀ ।। ୩ ।।

ଜୀବନ୍ତୀ ପିଙ୍ଗଳା ଆଦି ବାରବାଳା ସଂସାରୁ ଗଲେ ନିସ୍ତରି
ଅପାର ମହିମା କେତନ ଉଡ଼ାଇ ରଖିଛ କୀରତି ଶିରୀ ।। ୪ ।।

ମୁଁ ଛାର ନିର୍ମାଖୀ ତୁମ୍ଭର ସେବକୀ ପଣକୁ ଅଯୋଗ୍ୟ ନାରୀ
କରୁଛି ଦଇନି ଯୋଡ଼ି କର ବେନି ଶୁଣ ମାଧବୀ ଗୁହାରି ।। ୫ ।।







# ଦୀନବାନ୍ଧବ ହେ

ବଳରାମ ଦାସ

ଦୀନବାନ୍ଧବ ହେ, ମୋ ଦୁଃଖ ନଗଲା ଯେ
ତୁମ୍ଭେ ଦୀନବନ୍ଧୁ ମୋତେ ପାଶୋରିଲେ ମୋ ବନ୍ଧୁ ହୋଇବ କିଏ ।।

ତୁଳସୀର ମାଳ ତୁଳସୀର ଚୂଳ ତୁଳସୀ ମଥାରେ ଦେଇ
ତୁଳସୀ ଚଉରା ମୂଳେ ଅନାଇଲେ ନୀଳଚକ୍ର ଦିଶୁଥାଇ । ୧ ।

ଚୂଳର ଉପରେ ସେବତୀର ଗଭା ଦେଖିଲେ ମାଡ଼ଇ ଭୟେ
ଦୀନବନ୍ଧୁଠାରେ ବିପତ୍ତି ନଥାଇ ଯେଣେ ଯାଉଥିଲେ ଜୟେ । ୨ ।

ଦୀନବନ୍ଧୁ ବୋଲି ଯାହାଙ୍କୁ ବୋଲନ୍ତି ସେହିସେ ପରମ ଯୋଗୀ
ଯୋଗୀମାନଙ୍କର ଆତଙ୍କ ନାଶନ ଦୁଃଖିମାନଙ୍କର ଭୋଗୀ । ୩ ।

ଆଦି ଅନାଦିରେ ବନ୍ଧନ ପଡ଼ିଛି ମାୟା ମୋହଲାଗି ଧନ୍ଦ
ଶୂନ୍ୟ ପୁରୁଷ ଯେ ଶୂନ୍ୟରେ ଯାଉଛି କଓ୍ୱରୀ ପଡ଼ିବ ବନ୍ଦ । ୪ ।

ଏ ଭବସାଗରୁ ତରିବା ନିମନ୍ତେ ପଥର ବାନ୍ଧିଛି ଭେଳା
ତୁମ୍ଭେ ନ ରଖିଲେ ଭାସି ମୁଁ ଯାଉଛି ରଖ ରଖ ଚକାଡ଼ୋଳା । ୫ ।

ଭଗତ ଭାବରୁ ପ୍ରସନ୍ନ ହେବାରୁ ଭାବ ବିନୋଦିଆ ଯେଣୁ
ବଳରାମ ଦାସ ଅନ୍ନ ନ ମାଗଇ ମାଗଇ ଚରଣ ରେଣୁ । ୬ ।





# ନମସ୍ତେ ପ୍ରଭୁ ଜଗନ୍ନାଥ

*ଜଗନ୍ନାଥ ଦାସ*



ନମସ୍ତେ ପ୍ରଭୁ ଜଗନ୍ନାଥ ।
ଅନାଥ ଲୋକଙ୍କର ନାଥ ।।

ନମସ୍ତେ ପ୍ରଭୁ ବାସୁଦେବ ।
ଭକତ ଜନଙ୍କ ବାନ୍ଧବ ।।

ନମସ୍ତେ ପ୍ରଭୁ ହୃଷିକେଶ ।
ଭକତ ଜନଙ୍କ ବିଶ୍ୱାସ ।।

ନମସ୍ତେ ପ୍ରଭୁ ବିଶ୍ୱରୂପୀ ।
ସକଳ ହୃଦେ ଅଛୁ ବ୍ୟାପୀ ।।

ତୁ ସୃଷ୍ଟି ସ୍ଥିତି ଲୟ କରୁ ।
ଆବର ଗର୍ଭରେ ସଂହରୁ ।।

ଅଶେଷ କୋଟି ବସୁନ୍ଧରୀ ।
ତୋହରି ଗର୍ଭେଛନ୍ତି ପୂରି ।।

ଚଉଦ ଭୁବନେ ଯା' କିଣା ।
ଏ ସର୍ବ ତୋହର ରଚନା ।।

ତୁ ବ୍ରହ୍ମା ରୁଦ୍ର ବିଷ୍ଣୁ ତୁହି ।
ତୋ ବିନୁ ଅନ୍ୟ ଗତି ନାହିଁ ।।

ସୃଷ୍ଟି ତୋହର ଖେଳଘର ।
ଅଶେଷ ମାୟା ତୋ ଆବର ।।

ତୋହର ନିଃଶ୍ୱାସ ମରୁତ ।
ଦେବେ ହୋଇଲେ ତହୁଁ ଜାତ ।।







ତୁହିଟି ଅଗ୍ନି ଦେବ ଇନ୍ଦ୍ର ।
ନୟନୁଁ ଜାତ ସୂର୍ଯ୍ୟ ଚନ୍ଦ୍ର ।।

ଭୁଜରୁ ଅନନ୍ତ ମୂରତି ।
କଣ୍ଠରୁ ଜାତ ସରସ୍ୱତୀ ।।

ସଦା ଚଞ୍ଚଳ ନିଦ୍ରା ନାହିଁ ।
ଏ ରୂପେ ଶୂନ୍ୟେ ଅଛୁ ରହି ।।

ଅଶେଷ ତୋହର ମହିମା ।
କେ ଜାଣି ପାରେ ଗୁଣ ସୀମା ।।

ତୋ ନାମ କରୁଥିଲେ ଲୟ ।
କୋଟିଏ ଜନ୍ମ ପାପ କ୍ଷୟ ।।

ନାମ ଘୋଷିଲେ ସର୍ବ ସିଦ୍ଧି ।
ଖଣ୍ଡଇ ରୋଗ ଶୋକ ଆଦି ।।

ଆରତ ଭଂଜନ ତୋ ବାନା ।
ଆତଙ୍କ କାଳେ ବଜ୍ର ସେହ୍ନା ।।

ହୋଇଛୁ ଦଶ ଅବତାର ।
ନାଶିଛୁ ଅବନୀର ଭାର ।।

ଦୁଷ୍ଟ ନିବାରି ସନ୍ଥ ପାଳୁ ।
ତୁ ନାଥ ପରମ ଦୟାଳୁ ।।

ତୁ ଅଟୁ ଦରିଦ୍ରଙ୍କ ଧନ ।
ତୋ ପଦେ ରହୁ ମୋର ମନ ।।

ସତୀ ଯୁବତୀଙ୍କର ମନେ ।
ନିଜର ସ୍ୱାମୀ ଥାନ୍ତି ଯେହ୍ନେ ।।

ସେହି ପ୍ରକାରେ ମୋର ମନ ।
ତୋ ପଦେ ରହୁ ଭଗବାନ ।।

କହଇ ଜଗନ୍ନାଥ ଦାସ ।
କମଳ ଚରଣକୁ ଆଶ ।।





# ଶ୍ରୀପୁରୁଷୋତ୍ତମ ଯିବା ମନ

*ଜଗନ୍ନାଥ ଦାସ*

ଶ୍ରୀପୁରୁଷୋତ୍ତମ ଯିବା ମନ, ସାଙ୍ଗ ହୋଇଥିବା ପାଞ୍ଚଜଣ
ତୁନି ହୋଇଥିବା କେହି ନଜାଣିମେ ବସି ଭାଳୁଥିବା ମନେ ମନ
ପ୍ରଭୁ ପାଞ୍ଚ ଜଣ । ୧ ।

ଦାଣ୍ଡକୁ ଫିଟିଛି ସିଂହଦ୍ୱାର, ବାଇଶି ପାଉଛ ତଳ୍ୟକର
କଳ୍ପବଟ ମୂଳେ ଅନନ୍ତ ଶଯ୍ୟାରେ ମୁକ୍ତମଣ୍ଡପ ବିପ୍ରାଧର
ପ୍ରଭୁ ଲୟ କର । ୨ ।

ସାଜିଣି ହୋଇଛି ତିନିରଥ, ପାଟ ପତନି ମଣ୍ଡନି ନେତ
ସୁବର୍ଣ୍ଣ କଳସ ଉପରେ ଚିରାଳ ଫରଫର ଉଡ଼େ ବାନା ନେତ
ପ୍ରଭୁ ତିନି ରଥ । ୩ ।

ଶରଧା ବାଲିକି ଶୋଭାବନ, ତାଳଧ୍ୱଜରେ କି ବଳରାମ
ରଙ୍ଗସଭାତଳେ କଂସକୁ ମାଇଲେ ରାମକୃଷ୍ଣ ଏହି ବେନିଜନ
ପ୍ରଭୁ ବଳରାମ । ୪ ।

ଏହି ଜଗନ୍ନାଥ ଗୋପପୁରେ, ବଞ୍ଚା ରଖିଥିଲେ ନନ୍ଦ ଘରେ
କଂସର ଅଟକେ ଅଷ୍ଟମଲ୍ଲ ମାରି ଗିରି ଟେକିଅଛି ବାମ କରେ
ପ୍ରଭୁ ଗୋପପୁରେ । ୫ ।

ଶ୍ରୀକୃଷ୍ଣ ଚରଣେ ଆଶ କରି, ହୃଦେ ବୋଲୁଥାଇ ହରିହରି
କହେ ଜଗନ୍ନାଥ ଚରଣେ ଶରଣ ଆଜ୍ଞା ହେଉ ପ୍ରଭୁ ନୀଳଗିରି
ପ୍ରଭୁ ଦେବହରି । ୬ ।







# ଦୀନବନ୍ଧୁ

*ଅଚ୍ୟୁତାନନ୍ଦ ଦାସ*

ଦୀନବନ୍ଧୁ ! ମୋ ଦୁଃଖ ନ ଗଲା ଯେ
ତୁମ୍ଭେ ଦୀନବନ୍ଧୁ ମୋ ବନ୍ଧୁ ନୋହିଲେ
ମୋ ବନ୍ଧୁ ହୋଇବ କେ ।। ଘୋଷା ।।

ଦୀନବନ୍ଧୁ ବୋଲି ଯାହାକୁ କହନ୍ତି
ସେହିତ ପରମ ଯୋଗୀ
ଦୁଃଖୀ ଲୋକଙ୍କର ଦୁଃଖ ନିବାରଣ
ସୁଖୀ ଲୋକଙ୍କର ଭୋଗୀ ।। ୧ ।।

ଅତି ଆରତରେ ମୃଗୁଣୀ ଡାକିଲା
ଇନ୍ଦ୍ରକୁ ପେଶିଲ ହରି
ମୃଗୁଣୀ ଆରତ ଫେଡ଼ି ଜଗନ୍ନାଥ
ତାହାର ମାନ ଉଦ୍ଧରି ।। ୨ ।।

ତୁଳସୀର ଜଟ ତୁଳସୀ ମୁକୁଟ
ତୁଳସୀ ଭୂଷଣ ହୋଇ
ତୁଳସୀ ଚଉରା ପାଶେ ଅନାଇଲେ
ନୀଳଚକ୍ର ଦିଶୁଥାଇ ।। ୩ ।।

ଅବନୀର ଭାର ସଂକଟ ପଡ଼ିଲା
ପଥରକୁ କଲ ଭେଳା
ଅକୂଳ ସମୁଦ୍ରେ ମୋ ଭେଳା ଭାସୁଛି
ପାରିକର ଚକାଡୋଳା ।। ୪ ।।



ସମୁଦ୍ରତଟରେ ପକ୍ଷୀ ଅଣ୍ଡା ଦେଲା
ଡିମ୍ବ ନେଲା ରତ୍ନାକର
ସପ୍ତ ଡିମ୍ବତାର ଜଳରେ ଭାସିଲା
ପାରିକର ଚକ୍ରଧର ।। ୫ ।।

ଚକ୍ଷୁକୁ ଯେସନେ ପିଲ୍ଲୁଡ଼ା ଆବୋରି
ଭକ୍ତକୁ ତେହ୍ନେ ଗୋସାଇଁ
ଦୀନ ଅଚ୍ୟୁତ ଯେ ଭାବରେ ଭଣିଲେ
ପ୍ରଭୁପଦ ଚିତ୍ତେ ଧାୟୀ ।। ୬ ।।



# ଚନ୍ଦନ ଲାଗି

*ଶ୍ରୀ ଚନ୍ଦନ*

ଚନ୍ଦନ ଲାଗି ସମୟେ ଚିନ୍ତ ଚିନ୍ତାମଣିକି ।। ଘୋଷା ।।

ସୁବେଶର ଲାଗି ଶେଷ ଲାଗି ହୋଇ ଝୀନବାସ
କଟୀରେ ସୁବର୍ଣ୍ଣ ଝୁମ୍ପା
ଆହା କେଡ଼େ ଠାଣି କି ।। ୧ ।।

ତିନିବାଡ଼େ ତିନିଲୋକ ସେବକ ପଶୁପାଳକ
ରତ୍ନ ସିଂହାସନେ ଉଭା
ଯୋଡ଼ି ବେନି ପାଣିକି ।। ୨ ।।

ଚନ୍ଦନ ସଂସ୍କାର ସାରି ପ୍ରଭୁ ଅଂଗେ ଲାଗି କରି
ହରି ଭଦ୍ରା ସୁଦର୍ଶନ
କମଳା ଘରଣୀଙ୍କି ।। ୩ ।।

ହଡ଼ପ ନାୟକ ରହି ବିଡ଼ିଆ ପତ୍ରକୁ ବହି
କରାଇ ମୁଣୋହିଁ ତହିଁ
କମ୍ବୁଚକ୍ର ପାଣିକି ।। ୪ ।।

ଡାକଇ ଖୁଣ୍ଟିଆ ଦ୍ୱିଜ ମଣିମା ଭୋ ଦେବରାଜ
ଅଖିଳ ବ୍ରହ୍ମାଣ୍ଡ ନାଥ
ପ୍ରଭୁମନ ଜାଣିକି ।। ୫ ।।



ନିଜ ନିଜ ଗୁଣାବଳୀ  ବୀଣା ନାଦେ କୁତୁହଳୀ
ପଳାଇ ଦୂରିତ ପାପ
ହରିଧ୍ୱନି ଶୁଣିକି ।। ୬ ।।

ସେ କାଳେ କଳାଶ୍ରୀମୁଖ  ଶୁଣନ୍ତି ସକଳ ଦୁଃଖ
ଦର୍ଶନେ ପ୍ରସନ୍ନ ହୋଇ
ରଖ ଦୁଃଖୀ ଶ୍ରେଣୀ କି ।। ୭ ।।

ଆର୍ତ୍ତେ ଶ୍ରୀଚନ୍ଦନ ଭାଷେ  ଚିନ୍ତାବଳୀ ମଧ୍ୟେ ଭାସେ
କରୁଣା ନାବେ ବସାଇ
କୂଳେ ରଖ ଆଣିକି ।। ୮ ।।






# ମନ ଥୟ କରି ଦେଖ ଏଥ

ବାଇଧର ଦ୍ବିଜ

ମନ, ଥୟ କରି ଦେଖ ଏଥ
ନୀଳ କନ୍ଦରେ ସୁନ୍ଦର ଜଗନ୍ନାଥ ।। ଘୋଷା ।।

ଏହି ପ୍ରଭୁ ଜଗନ୍ନାଥ କଶ୍ୟପ ଋଷିଙ୍କ ସୁତ
ବାମନ ମୂରତି ହୋଇ ବଳି ଦ୍ୱାରେ ଉପଗତ
କରେ ଘେନି କୁଶ ପାତ୍ର ! ହରିଲେ ତାହାର ବିତ୍ତ
ପଦ୍ମପାଦ ଦେଇଥିଲେ ବଳିମାଥ ।। ୧ ।।

ଏହି ପ୍ରଭୁ ଜଗନ୍ନାଥ ଦଶରଥଙ୍କର ସୁତ
ସୀତୟା ଘେନି ସଙ୍ଗତେ ବୁଲିଲେ ଗହନ ପଥ
ସାଗରେ ବାନ୍ଧିଲେ ପଥ ! ଲଙ୍କାକୁ କଲେ ନିପାତ
ସୀତା ଛଳେ ବଧିଲେଟି ଦଶମାଥ ।। ୨ ।।

ଏହି ପ୍ରଭୁ ଜଗନ୍ନାଥ ନନ୍ଦର ହୋଇଲେ ସୁତ
କାଳୀ ଦଳି ପାଦଗତ ମଛିଲେଟି ସୁରନାଥ
କଂସ ଅସୁର ନିପାତ ! ଜଗତେ ଅଛି ବିଖ୍ୟାତ
ଭାରତ ଯୁଦ୍ଧରେ ବାହି ପାର୍ଥ-ରଥ ।। ୩ ।।

ଏ କଳି କାଳରେ ଦେଖ ଶଙ୍ଖ ଚକ୍ର ଧରି ହସ୍ତ
ବସିଛି କୈବଲ୍ୟ ହାଟ ପାପୀଏ ଦେଖି ମୁକତ
କି ଶୋଭା କଳା ଶ୍ରୀମୁଖ ! ଦେଖିଲେ ଖଣ୍ଡଇ ଦୁଃଖ
ପ୍ରଜାପତି ସଙ୍ଗେ ଶୋଭା ବିଶ୍ୱନାଥ ।। ୪ ।।

ଏହି ପ୍ରଭୁ ଜଗନ୍ନାଥ ଶଚିର ହୋଇଲେ ସୁତ
ବୈଷ୍ଣବ ଧର୍ମ ବିଖ୍ୟାତ ଶିଖାଇଲେ ମହାମନ୍ତ୍ର
ବୁଲିଲେ ଏହି ଜଗତ ! ଭକତ ଘେନି ସଂଗତ
ଦ୍ୱିଜ ବାଇଧର ଆଶ୍ରା ଲକ୍ଷ୍ମୀକାନ୍ତ ।। ୫ ।।





# ଜଗବନ୍ଧୁ ପରି ଜଣେ ସାମନ୍ତ

*ଦୀନକୃଷ୍ଣ ଦାସ*

ଜଗବନ୍ଧୁ ପରି ଜଣେ ସାମନ୍ତ
ନାହିଁ ନାହିଁ ତ
ଚଉଦ ଭୁବନ ବାରତା ଜାଣନ୍ତି
ଚକ୍ରେରେ ଛେଦନ୍ତି ଆରତ ।। ଘୋଷା ।।

ଯେତେବେଳେ କୃଷ୍ଣ ଗୋପପୁରେ ଥିଲେ
ଅକ୍ରୁର ଆଣିଣ ଗଲା ତ
ଗାଇ ଦୁହୁଁ ଦୁହୁଁ କେଶ ଫିଟିଗଲା
ଚତୁର୍ଭୁଜ ହେଲେ ଅନନ୍ତ ।। ୧ ।।

ସୁଗ୍ରୀବର ସଂଗେ ମଇତ୍ର ହୋଇଣ
ବାଳିକି ବିନାଶ କଲେ ତ
ରାବଣ ଭ୍ରାତା ଯେ ଶରଣ ପଶିଲା
ଲଙ୍କାଗଡ଼ ତାକୁ ଦେଲେ ତ ।। ୨ ।।

କୁରୁ ସଭାତଳେ ଦ୍ରୌପଦୀ ଚିନ୍ତିଲା
କୋଟି ବସ୍ତ୍ର ଦିଆଇଲେ ତ
ଭାରତ ଯୁଦ୍ଧରେ ଭରତିଆ ପକ୍ଷୀ
ଘଣ୍ଟ ଘୋଡ଼ାଇ ରଖିଲେ ତ ।। ୩ ।।

ଏମନ୍ତ ସାମନ୍ତ ତ୍ରିଭୁବନେ ନାହିଁ
ନାଶନେ ଆରତୀ ଆରତ
କହେ ଦୀନକୃଷ୍ଣ ଦାସ ଯେ ଶ୍ରୀକୃଷ୍ଣ
ପଦ୍ମପାଦ ଚିତ୍ତେ ଧାୟୀ ତ ।। ୪ ।।







# ଜୟ ଜଗବନ୍ଧୁ

*ଦୀନକୃଷ୍ଣ ଦାସ*

ଜୟ ଜଗବନ୍ଧୁ ହେ ଯଦୁ ନନ୍ଦନ
ବ୍ରଜବାଳୀ ହୃଦତଟ ଚନ୍ଦନ ।। ଘୋଷା ।।

ବଡ଼ ଦେଉଳେ ବିହାର ବଡ଼ଚିତା ବଡ଼ଚୂଳ
କି ଶୋଭା ଦିଶୁଛି କଳାବଦନ ।। ୧ ।।

ସେ ଯେଉଁ ଅଳକା ପନ୍ତି ଦେଖି ଭୁଲି ଯିବ ମତି
ମୁନିଜନଙ୍କର ମନ ମୋହନ ।। ୨ ।।

ବଡ଼ ବଡ଼ ଚକା ଆଖି ବଳିଆର ଭୁଜ ଦେଖି
ତହିଁରେ ରହିଲା ଲାଖି ମୋ' ମନ ।। ୩ ।।

ସେ ଯେଉଁ ରଙ୍ଗ ଅଧର ପୁରି ରହିଛି ମଧୁର
ନାସେ ଗଜମୋତି ଅତି ଶୋଭନ ।। ୪ ।।

କଟୀତଟେ ପାଟ ଝୁମ୍ପା ଓଡ଼ିଆଣୀ ତନୁକମ୍ପା
କି ଶୋଭା ଦିଶୁଛି ରେଖା କୁନ୍ଦନ ।। ୫ ।।

ଶ୍ରୀଜଗନ୍ନାଥ ଚରଣେ ଚିତ୍ତ ରହୁ ଅନୁକ୍ଷଣେ
ଦୀନକୃଷ୍ଣ ଦାସଙ୍କର ବଖାଣ ।। ୬ ।।





# ଜୟ ଜୟ ଜଗନ୍ନାଥ

*ଦୀନକୃଷ୍ଣ ଦାସ*



ଜୟ ଜୟ ଜଗନ୍ନାଥ ନୀଳଗିରି ପତି
ଅଭିନବ ଜଳଧର ସୁନ୍ଦର ମୁରତି ହେ ।। ୧ ।।

ସୁସଞ୍ଚ ଠାଣିରେ ଶୋହେ ସୁବର୍ଣ୍ଣର ସୂତା
ଚୂଳରେ ଦୟଣା ଗଭା କସ୍ତୁରୀର ଚିତା ହେ ।। ୨ ।।

ଢଳ ଢଳ ଦିଶଇ ମୁକୁତା କଣ୍ଠିମାଳ,
ଶ୍ରବଣ ପୁଟରେ ବେନି ମର୍କତ କୁଣ୍ଡଳ ହେ ।। ୩ ।।

ନବରତ୍ନ ପଦକ ହୃଦରେ ଭଲା ସାଜେ,
ମର୍କତ କଂକଣ ବେନି ଭୁଜରେ ବିରାଜେ ହେ ।। ୪ ।।

ଡମ୍ବରୁ ମଝାକୁ ଶୋଭା ଦିବ୍ୟ ଓଡ଼ିଆଣି,
ଶ୍ରୀଅଙ୍ଗେ ଚନ୍ଦ୍ର ଚନ୍ଦନ ନେତ୍ର ଚାରୁ ଠାଣି ହେ ।। ୫ ।।

ରୂପକୁ ନୁହଇ ଲକ୍ଷ କୋଟିଏ ମଦନ
ରଙ୍ଗ ଅଧରକୁ ଶୋହେ ଡାଳିମ୍ବ ଦଶନ ହେ ।। ୬ ।।

କଟଚି ବାହୁଟି ଯେ ବିବିଧ ରତ୍ନ ଜଡ଼ି,
ଦୟଣାର ଧଣ୍ଡାମାଳ ହୃଦ ଯାଏଁ ପଡ଼ି ହେ ।। ୭ ।।

କଳା ମୁଖ ଗୋଟିକି ସୁନ୍ଦର ଚକାଡ଼ୋଳା
ପଦ୍ମଫୁଲ ଭିତରେ କି ଭୃଙ୍ଗ କରେ ଖେଳା ।। ୮ ।।

ଶଙ୍ଖ-ଚକ୍ର ଗଦାପଦ୍ମ ଚତୁର୍ଭୁଜେ ଶୋହେ
କୋଟିଏ କନ୍ଦର୍ପ ରୂପ ତ୍ରିଭୁବନେ ଶୋହେ ହେ ।। ୯ ।।

ଭକତ ଜନ ଶଙ୍କାକି ମୁକତିର ଘର,
ଶରଣ ମାଗଇ ଦୀନ କୃଷ୍ଣ ଦାସ ଛାର ହେ ।। ୧୦ ।।









# ଜଗବନ୍ଧୁ ଅଙ୍କେ ରତନପଲଙ୍କେ

(ଦୀନ)କୃଷ୍ଣ ଦାସ

ଜଗବନ୍ଧୁ ଅଙ୍କେ ରତନପଲଙ୍କେ
ପହୁଡ଼ିଲେ ସିନ୍ଧୁ-ଜେମାଦେଇ ।ଘୋଷା।

ଦିବ୍ୟ ସୁବାସ ଜଳ ସୁନାଝରୀରେ
ଦିବ୍ୟ ସୁବାସ ପଇଡ଼ ତଳେ ଥୋଇ

କୁସୁମ ବିଞ୍ଚଣୀ ଧରି କେ ବିଞ୍ଚଇ
ବେନି ସଖୀ ହେଲେ କୁହାକୁହି ।୧।

ପୁଗ ଖଇର ଅଳାଇଚ ଲବଙ୍ଗ
ଯାତି ଶ୍ରୀଫଳ କରିଣ ଏକ ସଙ୍ଗ
ବିଚିତ୍ର କରିଣ ବିଡ଼ିଆ ସଜାଡ଼ି
ରତ୍ନବଟାରେ ଖଞ୍ଜିଲେ ନେଇ ।୨।

କେ ବୋଲେ ଅନା ଆରେ ମୀନନୟନା
ଘନକୋଳେ କି ଚନ୍ଦ୍ର ଚକୋର ସିନା
ଝଳି ଅଙ୍ଗରେ ମରକତକୁନ୍ଦନ
ମୀନାକୁ ଫୁଙ୍କି ଦେଇଛି ବିହି ।୩।

କହେ ଦୀନ କୃଷ୍ଣ ସେ ଶୋଭା ଦର୍ଶନ
ପଡ଼ିବି ଚରଣେ ହୋଇବେ ପ୍ରସନ୍ନ
ଯେଉଁ ଚରଣ କୋଟି ବ୍ରହ୍ମା ମୁନୀନ୍ଦ୍ର
ଯୋଗେନ୍ଦ୍ର ନ ଧାୟୀ ପାନ୍ତି ଧାୟି ।୪।





# ଆହେ ନୀଳ ଶଇଳ ...

ସାଲବେଗ

ଆହେ ନୀଳ ଶଇଳ ପ୍ରବଳମତ୍ତ ବାରଣ
ମୋ ଆରତ ନଳିନୀ ବନକୁ କର ଦଳନ ।। ଘୋଷା ।।

ଗଜରାଜ ଚିନ୍ତା କଲା ଥାଇ ଘୋର ଜଳେଣ
ଚକ୍ର ପେଷି ଗ୍ରାହନାଶି ଉଦ୍ଧରିଲ ଆପଣ ।। ୧ ।।

ଘୋରବନେ ମୃଗୁଣୀକି ପଡ଼ିଥିଲା କଷଣ
କେଡ଼େ ବଡ଼ ବିପତ୍ତିରୁ କରିଅଛ ତାରଣ ।। ୨ ।।

କୁରୁସଭା ତଳେ ଶୁଣି ଦ୍ରୌପଦୀର ଜଣାଣ
କୋଟି ବସ୍ତ୍ର ଦେଇ ହେଲେ ଲଜ୍ଜା କଲ ବାରଣ ।। ୩ ।।

ରାବଣର ଭାଇ ବିଭୀଷଣ ଗଲା ଶରଣ
ଶରଣ ସମ୍ଭାଳି ତାକୁ ଲଙ୍କେ କଲ ରାଜନ ।। ୪ ।।

ପ୍ରହଲାଦ-ପିତା ସେ ଯେ ବଡ଼ ଦୁଷ୍ଟ ଦାରୁଣ
ସ୍ତମ୍ଭରୁ ବାହାରି ତାକୁ ବିଦାରିଲ ତକ୍ଷଣ ।। ୫ ।।

କହେ ସାଲବେଗ ହୀନ ଜାତିରେ ମୁଁ ଯବନ
ଶ୍ରୀରଙ୍ଗାଚରଣ ତଳେ କରୁଅଛି ଜଣାଣ ।। ୬ ।।







# ଚାଲ ସଖୀ ଆମ୍ଭେ ଦର୍ଶନ କରିବା

*ସାଲବେଗ*

ଚାଲ ସଖୀ ଆମ୍ଭେ ଦର୍ଶନ କରିବା
ନୀଳଗିରି କାଳିଆକୁ
କେଉଁ ସୁରପତି ବେଶ କରିଅଛି
ଗିରିବର ଡୋଳିଆକୁ
ସେ ଯେ ଶ୍ରୀମୁଖ ତୋରା
ଶିରେ ସୁନାସୁତା କେରା କେରା ।। ୧ ।।
ଶ୍ୱେତ ପଦ୍ମ ଆଖି ଦେଖିଲେ ଗୋ ସଖୀ
ଚିତ୍ତ କି ବାହୁଡ଼େ ଆଉ
କର୍ଣ୍ଣରେ କୁଣ୍ଡଳ ଦିଶେ ଝଳମଳ
କଉସ୍ତୁଭ ଦାଉ ଦାଉ
ସେ ଯେ ହିଆ ବୃଷାନ,
ମିଶାମିଶି ବରାନିଧି ଫଳ ।। ୨ ।।
ଶଙ୍ଖ ଚକ୍ର ଗଦା ପଦ୍ମ ମହାପ୍ରଭୁ
ଧରିଛନ୍ତି ଆଣ୍ଠ କରି
ଦୁଃସହ ଦୁର୍ଗତି ଗ୍ରହ ପୀଡ଼ାମାନେ
ଆଉ କି ପଶିବେ ଡରି
ସେ ଯେ ଦୟାସାଗର
ତାଙ୍କ ପଦ୍ମ ପାଦେ ଲୟ କର ।। ୩ ।।
ଶ୍ରୀପୁରୁଷୋତ୍ତମ ରହଣି କରିବା
ଖାଇବା ଛଡ଼ା ତୁଳସୀ
କହେ ସାଲବେଗ ସିଂହଦ୍ୱାରଠାରେ
ହୋଇଥିବା କ୍ଷେତ୍ରବାସୀ
ସେ ଯେ ଆରତ ତ୍ରାଣ
କାଳଗଜକୁ ସିଂହ ପ୍ରୟାଣ
ଚାଲ ଚାଲ ପଶିବା ଶରଣ ।। ୪ ।।





# ମୋତେ ସେହି ରୂପ ଦେଖାଅ ହରି

*ସାଲବେଗ*

ମୋତେ ସେହି ରୂପ ଦେଖାଅ ହରି
ଜୟ ଶ୍ରୀ ରାଧେ ରାଧେ (ବୋଲି) ଡ଼ାକେ ବାଂଶରୀ
ଯେଉଁ ରୂପେ ବଳିଦ୍ୱାରେ ହେଲ ଭିକାରୀ ।ଘୋଷା।

ତ୍ରିପାଦରେ ଦାନ ନେଇ ବଳିକି ପାତାଳେ ଥୋଇ
ତେଣୁ କରି ଶୁକ୍ରମନ୍ତ୍ରୀ ନୟନରେ କୁଶ ଭରି ।୧।

କୈକେୟୀ ହେଲେ ଭଗାରି ରାମ ହେଲେ ବନଚାରୀ
ସଙ୍ଗତେ ସୀତୟା ନାରୀ ଲକ୍ଷ୍ମଣ ଯା ସେବାକାରୀ ।୨।

ଗୋପେ ଜନମ ହୋଇଲ ବନେ ଧେନୁ ଚରାଇଲ
ଗୋପାଳପୁଅଙ୍କ ମେଳେ ନାଚୁଥାଅ ଢ଼ଳି ଢ଼ଳି ।୩।

ଡ଼ାହାଣେ ଶ୍ରୀ ହଳପାଣି ମଧ୍ୟେ ସୁଭଦ୍ରା ଭଉଣୀ
ବାମପାଶେ ବସିଛନ୍ତି ଶଙ୍ଖ-ଚକ୍ର-ଗଦାଧାରୀ ।୪।

କହେ ସାଲବେଗ ହୀନ ଜାତିରେ ଅଟେ ଯବନ
କଂସଅଷ୍ଟମଲ୍ଲ ମାରି କାହାକୁ ନ ଅଛ ତାରି ।୫।







# କେଣେ ଘେନି ଯାଉଛ

ସାଲବେଗ

କେଣେ ଘେନି ଯାଉଛ ଜଗନ୍ନାଥଙ୍କୁ
ଆମ୍ଭେ ଦର୍ଶନ କରିବୁ କାହାକୁ ? ।।୦

ଖୁଣ୍ଟିଆ ଡାକ ଦେଲେ ପହଣ୍ଡି ବିଜେ ହେଲେ
ବିଜୟ କର ପ୍ରଭୁ ଚାପକୁ,
ଆମ୍ଭେ ଦର୍ଶନ ... ।। ୧ ।।

କୁଳବଧୂଙ୍କ ରଡ଼ି ପଣ୍ଡାଏ ଗଡ଼ାଗଡ଼ି
ବିଧାତା ବାମ ହେଲା ଆମ୍ଭକୁ
ଆମ୍ଭେ ଦର୍ଶନ ... ।। ୨ ।।

ବଡ଼ ଦେଉଳୁ ବାହାରି ଶଗଡ଼ିରେ ବିଜେ କରି
ରେଣୁ ଯେ ଗଡୁଥିବ ଶ୍ରୀମୁଖକୁ
କହଇ ସାଲବେଗ ନିର୍ମାଲ୍ୟ କାହୁଁ ହେବ
ଧିକ ଧିକ ଆମ୍ଭ ଜୀବନକୁ
ଆମ୍ଭେ ଦର୍ଶନ ... ।। ୩ ।।





# ଏକା ତୋ ଭକତ ଜୀବନ

*ସାଲବେଗ*

ଏକା ତୋ' ଭକତ ଜୀବନ
ଭକତ ନିମନ୍ତେ ତୋର ଶଙ୍ଖଚକ୍ର ଚିହ୍ନ ।। ୦ ।।

ଭକତ ତୋ ପିତାମାତା ଭକତ ତୋ ବନ୍ଧୁ
ଭକତ ହିତରେ ତୋର ନାମ କୃପାସିନ୍ଧୁ ।। ୧ ।।

ଧେନୁ ପଛେ ପଛେ ବସା ଗମେ କ୍ଷୀର ଲୋଭେ
ଭକତ ପଛରେ ତୁହି ଥାଉ ସେହି ଭାବେ ।। ୨ ।।

ବୋପା ମୋ ମୋଗଲ ପୁଅ ମାଆ ମୋ ବ୍ରାହ୍ମଣୀ
ଏ କୁଳେ ଜନ୍ମିଲି ହିନ୍ଦୁ ନ ଖାଏ ମୋ ପାଣି ।। ୩ ।।

କହେ ସାଲବେଗ ହୀନ ଜାତିରେ ଯବନ
ଶ୍ରୀରଙ୍ଗାଚରଣ ବିନୁ ନ ଜାଣଇ ଆନ ।। ୪ ।।







# ଜଗବନ୍ଧୁ ହେ ଗୋସାଇଁ

*ସାଲବେଗ*

ଜଗବନ୍ଧୁ ହେ ଗୋସାଇଁ
ତୁମ୍ଭ ଶ୍ରୀଚରଣ ବିନୁ ଅନ୍ୟ ଗତି ନାହିଁ ।। ୦ ।।

ସାତଶ ପଞ୍ଚାଶ କୋଶ ଚାଲି ନ ପାରଇ
ମୋହ ଯିବା ଯାଏ ନନ୍ଦିଘୋଷେ ଥିବ ରହି ।। ୧ ।।

ରଥ ଚାରିପାଶେ ଲମ୍ବେ ମୁକୁତାର ଝରା
ଝଲଝଲ ଦିଶୁଥାଇ ପ୍ରଭୁ ଚକାଡ଼ୋଳା ।। ୨ ।।

ବାଇଶି ପାବଚ୍ଛ ତଳେ ବିକା ହୁଏ ଭାତ
ଦର୍ଶନ ତେଣିକି ଥାଉ କୈବଲ୍ୟ ମୁକତ ।। ୩ ।।

ଆଗେ ଚଳେ ବଳଭଦ୍ର ମଧ୍ୟେ ଚାନ୍ଦମୁହିଁରେ
ଆସୁଛି କାଳିଆ ପଛେ ଗହଣ ଲଗାଇରେ ।। ୪ ।।

କହେ ସାଲବେଗ ହୀନ ଜାତିରେ ଯବନ
ଏହି ମତେ ଆଜ୍ଞା ହେବ ଶିରି ବୃନ୍ଦାବନ ହେ ।। ୫ ।।





# ବାଛି କେ ନାମ ଦେଲା ଦୟାନିଧି

*ସାଲବେଗ*

ବାଛି କେ ନାମ ଦେଲା ଦୟାନିଧି
ଦଇତାରି ଦୟାନିଧି ଦୟାଳୁ ରାମହରି
ନିର୍ଦ୍ଦୟ କିପାଁ ହେଲ ନିରବଧି । (ଘୋଷା)

ଭଜିଣ ସେ ପଦାମ୍ବୁଜ ହେଲେ ତରିଗଲା ଦ୍ୱିଜ
କାହୁଁ ସ୍ଫୁରିଲା ତାର ବଳବୁଦ୍ଧି । ୧ ।

ଚିନ୍ତିଲା ପ୍ରହ୍ଲାଦ ଭକ୍ତ ପାଇଁ ବିଷାଦି
ସ୍ତମ୍ଭରୁ ବାହାରି ତା ପିତାକୁ ବଧି । ୨ ।

ଗୋପେ ରଖି ଗୋକୁଳ ଗିଳିଲ ଦାବାନଳ
କଲ ଗୋପୀଙ୍କର କାମନା ସିଦ୍ଧି । ୩ ।

କହେ ସାଲବେଗ ହୀନ ଏହି ମୋର ନିବେଦନ
ସେ ପାଦେ ଚିତ୍ତ ରହୁ ନିରବଧି । ୪ ।







# ଆହେ ନୀଳଗିରି !

ସାଲବେଗ

ଆହେ ନୀଳଗିରି !
ତୁମ୍ଭ ଶ୍ରୀଭୁଜେ ଦୟଣା କେରି କେରି । ଘୋଷା ।

ତୁଳସୀ ଚଉରା ପାଶେ ଲଗି,
ବସି ଧ୍ୟାଉଛନ୍ତି କେତେ ଯୋଗୀ
ବ୍ୟାଘ୍ରଚର୍ମ ପାତି ସ୍ତୁତି କରୁଛନ୍ତି
ଜପୁଛନ୍ତି ନାମ ସଂଖ୍ୟା କରି । ୧ ।

ବଡଦାଣ୍ଡ ଦେଖି ହେଲି ତୋଷ,
ରେଣୁମାତ୍ର ତେଣୁ କଲି ଗ୍ରାସ
କ୍ଷିରୀ ଖେଚେଡିରେ ମନ ନବୋଧଇ
ଟଙ୍କ ତୋରାଣିରେ ମନ ତୋଷ । ୨ ।

ସିଂହଦ୍ୱାରେ ବାଜେ ବେତବାଡି,
ବାଜନ୍ତେ ପାତକ ଯାଏ ଛାଡି
ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ
ଏକକୁ ଆରେକ ହୁଡାହୁଡି । ୩ ।

ବାଇଶି ପାବଚ୍ଛେ ଗଲି ସୁଖେ
କୈବଲ୍ୟପସରା ବେନି ପାଖେ
ଚଣ୍ଡାଳୁ ବ୍ରାହ୍ମଣ ଶୁଦ୍ର ପରିଯନ୍ତେ
କୈବଲ୍ୟ ଭୁଞ୍ଜନ୍ତି ମୁଖେ ମୁଖେ । ୪ ।



ରୋହିଣୀପାଦୁକକୁଣ୍ଡରଙ୍କ
ସିଂହମାଡି ବସିଅଛି ଗଜ
ସତେ କି ଏ ନେତ୍ର ସୁଫଳ ହୋଇବ
କାକ ପଡି ହେଲା ଚତୁର୍ଭୁଜ । ୫ ।

ଗରୁଡ ପଛରେ ରହି ଦେଖ କି
ଶୋଭା ପାଉଛି ପଦ୍ମମୁଖ
ହୀରା ନୀଳା ମୋତି ମାଣିକ୍ୟ ଜଳୁଛି
ହୃଦେ ଲମ୍ବିଅଛି ବ୍ୟାଘ୍ରନଖ । ୬ ।

ଶ୍ରୀଜଗନ୍ନାଥଙ୍କ ଠାକୁରାଣୀ
ସୁବର୍ଣ୍ଣ ଥାଳୀରେ ଅର୍ଘ୍ୟ ଆଣି
କଳାଶ୍ରୀମୁଖକୁ ବନ୍ଦାଣ କରନ୍ତି
ସାଧୁ ସନ୍ଥ ଦ୍ୟନ୍ତି ହରିଧ୍ୱନି । ୭ ।

କହେ ସାଲବେଗ ହୀନ ଜାତି
ଶ୍ରୀରଙ୍ଗା ଚରଣେ ରହୁ ମତି
ଶ୍ରୀଜଗନ୍ନାଥଙ୍କୁ ଜଣାଣ କରୁଛି
ଦୟାକର ବାରେ ଲକ୍ଷ୍ମୀପତି । ୮ ।







# ଥକାମନ ଚାଲ ଯିବା

ସାରିଆ ଭିକ

ଥକାମନ ଚାଲ ଯିବା
ଚକା ନୟନ ଦେଖିବା
ଶଙ୍ଖନାଭି ମଣ୍ଡଳରେ
ବେନି ନେତ୍ର ପଖାଳିବା ।। ଘୋଷା ।।

ବାଟରେ ବାଟ ମଙ୍ଗଳା
ଦେଖିବା ଅଠର ନଳା
ପାଞ୍ଚ ମନ ଏକ ମେଳେ
ନରେନ୍ଦ୍ରେ ସ୍ନାନ କରିବା ।। ୧ ।।

ପହଞ୍ଚିବା ବଡ଼ ଦାଣ୍ଡେ
ସେ ରେଣୁ ପାଇବା ତୁଣ୍ଡେ
ଛତା ତଳେ ରହି ଦଣ୍ଡେ
ସାଧୁଙ୍କ ସେବା କରିବା ।। ୨ ।।

ସିଂହଦ୍ୱାରେ ଭିଡ଼ାଭିଡ଼ି
ବାଜୁଅଛି ବେତ ବାଡ଼ି
ଠେଲି ଦେଇ ଯିବା ମାଡ଼ି
ଧକା ବାଜିଲେ ସହିବା ।। ୩ ।।



ବାଇଶି ପାବଛେ ବିକା
ହେଉଛି କୈବଲ୍ୟ ଚଖା
ହାଣ୍ଡିକ ପଡ଼େ ସିଉକା
ମନ ରଙ୍କା ଛଡ଼ାଇବା ।। ୪ ।।

ଗରୁଡ଼ ପଛରେ ଦେଖ
ଦିଶୁଛି କଳା ଶ୍ରୀମୁଖ
କହଇ ସାରିଆ ଭିକ
ବଳରାମଙ୍କୁ କହିବା ।। ୫ ।।







# ଦୀନ ବନ୍ଧୁହେ

ଭିକାରୀ

ଦୀନବନ୍ଧୁ ହେ ! ବାରେ ଘେନ ଜଣାଣ
ଏ ମହାଦୁଃଖକୁ ମୋର ଶୀଘ୍ର କର ଦହନ ।। ଘୋଷା ।।

ସତ୍ୟ ତ୍ରେତା ଦ୍ୱାପର କଳିରେ ଅବତାର
ବସିଛ ନୀଳକନ୍ଦର
ହୋଇ ପରା ମଉନ ।। ୧ ।।

ତୁମ୍ଭ ନାମ ଶୁଣି ହନୁ ଅଇଲା ଲଙ୍କାଭୁବନୁଁ
ବିଂଶ ବାହୁ ବିନାଶିଣ
ବିଭୀଷଣ ରାଜନ ।। ୨ ।।

କୁରୁପତି ସଭାତଳେ ଦ୍ରୌପଦୀ ଆତଙ୍କକାଳେ
କୋଟି ବସ୍ତ୍ର ଦେଲ ହେଳେ
ଲଜ୍ଜା ତା' ନିବାରଣ ।। ୩ ।।

ବନସ୍ତେ ଡାକେ ହରିଣୀ ରଖ ଆହେ ଚକ୍ରପାଣି
ସେ ଡାକ କର୍ଣ୍ଣରେ ଶୁଣି
ରଖିଛ ଭଗବାନ ।। ୪ ।।

ଅଗାଧ ଜଳରେ ଗଜ ଉଦ୍ଧରିଲ ଦେବରାଜ
କାକ ପଡ଼ି ଚତୁର୍ଭୁଜ
ହେଲାଟି ଘେନି ନାମ ।। ୫ ।।

ଶ୍ରୀଗୁରୁଦେବ ଚରଣେ ଚିତ୍ତ ରହୁ ଅନୁକ୍ଷଣେ
ବାଇ ଭିକାରିଆ ଭଣେ
ଦୁଃଖ କର ଦହନ ।। ୬ ।।





# ନୂଆ ଘର ଖଣ୍ଡି ଦିନେ ପୁରୁଣା ହେବ

ବାଉଳି ଦାସ

ନୂଆ ଘର ଖଣ୍ଡି ଦିନେ ପୁରୁଣା ହେବ
ମାରିବ ଶୂନ୍ୟ ଲହରୀ ଥୟ ନୋହିବ ।୦।

ଉଈ ଚରିଗଲେ ଗଣ୍ଡି ବତା ମାନ ଯିବ ଫିଟି
ଛାଉଣି ଉଡ଼ିଣ ଗଲେ କାନ୍ଥ ପଡ଼ିବ ।୧।

ଗୁଅ ଯାକ ଅଛି ଭରା ଟଳିଲେଣି ବେନି ଓରା
ଚମକ ପାଇଣ ପାରା ଉଡ଼ିଣ ଯିବ ।୨।

ଘରଟି ପାଞ୍ଚ ଖେଣିଆ ଦଶଦ୍ୱାର ତ୍ରିକୋଣିଆ
ଗୁଅ ଯାକ ଘୁଣ ଖିଆ ଗଳି ପଡ଼ିବ ।୩।

ବହିଲାଣି ଅଣଚାଶ କେବେ ନରହିବ ବାସ
କୁଟୁମ୍ବ ପାଞ୍ଚ ପଚିଶ ମରିବେ ସର୍ବ ।୪।

ଏକାକ୍ଷର ଖମ୍ବ ପୋତି ଘରକୁ ରଖ ସାଇତି
ବାଉଳି ଦାସର ମତି ନିଶ୍ଚଳେ ଥିବ ।୫।



# ଶ୍ରୀଜଗନ୍ନାଥ କୃପା ନିଧାନ ହେ

*ଦୀନବନ୍ଧୁରାଜ ହରିଚନ୍ଦନ*

ଶ୍ରୀଜଗନ୍ନାଥ କୃପା ନିଧାନ ହେ !
କର ଦୀନରେ କୃପା ଅବଧାନ ହେ ।। ପଦ ।।

ସେବକ ଅପରାଧୀ ହେଲେ କରୁଣାନିଧି
କ୍ଷମା ତ ପ୍ରଭୁପଣ ବିଧାନ ହେ ।। ୧ ।।

ସାଧୁଜନଙ୍କ ସଙ୍ଗେ ମଜି କୀର୍ତ୍ତନ ରଙ୍ଗେ
ନକଲି ତୁମ୍ଭ ଯାତ୍ରା ଲୋକନ ହେ ।। ୨ ।।

ତୁମ୍ଭ ଶ୍ରୀମୂର୍ତ୍ତି ଶୋଭା ଦେଖି ମୋ ନେତ୍ର ଲୋଭା
ନୋହିଲା ବ୍ୟର୍ଥ ହେଲା ନୟନ ହେ ।। ୩ ।।

ସେବା ବିନା ତୁମ୍ଭର ହେ କଞ୍ଜ ନେତ୍ର ମୋର
ଧିକ ରାଜ୍ୟପ୍ରଭୁତ୍ୱ ଜୀବନ ହେ ।। ୪ ।।

ଆହେ ଆରତତ୍ରାଣ ହୁଅ ଦୁଃଖୀ ଶରଣ
ଦୀନବନ୍ଧୁ ଦୁଃଖ ବିମୋଚନ ହେ ।। ୫ ।।





# ଶ୍ରୀ ମାନ ଉଦ୍ଧାରଣ ଜଣାଣ

*କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ*



ମାନଉଦ୍ଧାରଣ ! କରେ ହେ କାରଣ
ଶରଣ ମୁଁ ତୁମ୍ଭ ପାଦତଳେ । ଘୋଷା ।

ଅନାଥର ନାଥ ନୀଳଗିରିନାଥ
ଜଗନ୍ନାଥନାମ ନୀଳାଚଳେ
ମହୋଦଧିକୂଳେ କଳ୍ପବଟମୂଳେ
ବିଜେ କରିଛ ବଡ଼ ଦେଉଳେ ।୧।

ଲକ୍ଷେ ଯୋଜନରେ ଗଜ ଡ଼ାକ ଦେଲା
ତା ଡ଼ାକ ଶୁଣିଲ ପଣାଖେଳେ
ମାରକଣ୍ଡ ଋଷି ଯାଉଥିଲେ ଭାସି
ଉଧରି ଧଇଲ ବାମକରେ ।୨।

କିଷ୍କିନ୍ଧ୍ୟାକୁ ଗଲ ବାଳି ବିନାଶିଲ
ବନ୍ଧ ଯେ ବାନ୍ଧିଲ ସିନ୍ଧୁଜଳେ
ଲଙ୍କାରେ ରାବଣ ବଧିଲ ଆପଣ
ଜନକନନ୍ଦିନୀ-ସୀତା-ଛଳେ ।୩।

ଯୁଧିଷ୍ଠିର ବୋଲେ ହସ୍ତିନାକୁ ଗଲ
ଭୋଜନ କଲ ବିଦୁର ଘରେ
କୁରୁସଭାତଳେ ଦ୍ରୌପଦୀ ଚିନ୍ତିଲା
କୋଟି ବସ୍ତ୍ର ଦେଲ ଅବହେଳେ ।୪।

ବଣପୋଡ଼ି ବେଳେ ଘୋର ଦାବାନଳୁଁ
ଉଧରି ରକ୍ଷିଲ ବ୍ରଜବାଳେ
କହେ ଉପେନ୍ଦ୍ର କବି-କୁଳ-ଚନ୍ଦ୍ର
ଶରଣ ମୁଁ ତୁମ୍ଭ ପାଦତଳେ ।୫।








# ରମାରମଣ ହେ

କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ

ରମାରମଣ ହେ ! ତୁମେ ପରା ଦୟାସିନ୍ଧୁ
ଦୀନଠାରେ କିମ୍ପା ହୁଦେ ଅନୁକମ୍ପା
ହେଉନାହିଁ ଦୀନବନ୍ଧୁ ।। ଘୋଷା ।।
ତ୍ରିଭୁବନ ଦୁଷ୍ଟ ନିବାରଣ ରୁଷ୍ଟ
ବାଡ଼ବାଗ୍ନି ଗର୍ଭେ ଭରି
ଲୋକାଲୋକ ଗିରି ଭଗତ ମଣ୍ଡଳୀ
ମଧ୍ୟେ ହୋଇଛ ମାଧୁରୀ ।। ୧ ।।
ଅଗାଧ ସୁଷମା ଅଶେଷ ମହିମା
ସଂକୁଳେ ହୋଇ ପ୍ରଚୁର
ମଛ କଛ ଜଳଚର ଅବତାରଙ୍କର-
ଅଟ ଜନ୍ମ ସ୍ଥଳ ।। ୨ ।।
ଜଳଦ ଗଭୀର ବାଣୀ ସୁମଧୁର
ଘୋଷକୁ କରି ବଂଦିତ
ତରଙ୍ଗ ବିଶେଷ ମହା ମହୋଲ୍ଲାସ
ଭରେ ହୋଇଛ ରଞ୍ଜିତ ।। ୩ ।।
ତରଙ୍ଗିଣୀ ବୃନ୍ଦ ସୁମନସ କଦମ୍ବର-
ନୃପତି ବୋଲାଇ
ମହତି ପରମ ଯୋଗେ ଦୁରାଧମ
ଜନକୁ କରୁଛ ତ୍ରାହି ।। ୪ ।।
ଅଣିମାଦି ଅଷ୍ଟ ରତନ ବିଶିଷ୍ଟ
ପ୍ରଦାନେ କୁଶଳ ହୋଇ
କଷ୍ଟକୁ ଲୋକର କରୁଛ ନିକର
ଭଞ୍ଜ ବୀରବର କହି ।। ୫ ।।





# କଳା ଶ୍ରୀମୁଖ ହେ

*କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ*

କଳା ଶ୍ରୀମୁଖ ହେ ! ନଗଲା ମୋର ଦୁଃଖ
କଳପ ତରୁକୁ ଆଶ୍ରେ କରିଛି ମୁଁ
କି ବୋଲିବେ ଶୁଣି ଲୋକ ।। ଘୋଷା ।।

ବିବସନ କଲାବେଳେ ଅନ୍ଧବାଳା
ବୃନ୍ଦା ବନେ ହରିଣାଙ୍କ
ଆଣି କୋଟି ଚେଳ ପାଞ୍ଚାଳୀକି ଦେଲ
କି ରୂପେ ହୋଇତା ପକ୍ଷ ।। ୧ ।।

ଗୋକୁଳ ଶବରୀ ଆଣି ଦେଲା କୋଳି
ବିକିବାକୁ ବନଜାକ୍ଷ
ହେଲା ତା' ପସରା ଯାକ ହେମ ପରା
ପଡ଼ନ୍ତେ ତୁମ୍ଭ କଟାକ୍ଷ ।। ୨ ।।

ଦରିଦ୍ର ବିପ୍ରର କଥାକୁ ତୁମ୍ଭର
ହୃଦୟେ କରି ବିବେକ
କେଉଁ ସଂପଦକୁ ନ ଦେଲ ତାହାକୁ
ଦେବାଧିଦେବ ନାୟକ ।। ୩ ।।

ବଳୀକି ପାତାଳେ ମଣିମୟ ପୁରେ
ବିଳୋହ ଅନେକ ସୁଖ
ରଖିଅଛ ପୁଣି ତାକୁ ଚକ୍ରପାଣି
ତହୁଁ କରିବାକୁ ମୋକ୍ଷ ।। ୪ ।।





ହେବାର ବିନତ ଦଶାନନ ଭ୍ରାତ
ତବ ଶ୍ରୀଚରଣରେ ଦେଖ
ବସିଛି ସଜୀବେ ଅଦ୍ୟାପି ଏ ଭବେ
ପାଇ ସ୍ୱର୍ଣ୍ଣମୟୀ ଲଙ୍କ ।। ୫ ।।

ମୃକଣ୍ଡୁ କୁମର ପାଣ୍ଡବାଦିକାର
ନ ଫେଡ଼ି କେଉଁ ଆତଙ୍କ
କାହାକୁ କି ଦୟା କରି ନାହିଁ ମାୟାଧର
କୈବଲ୍ୟ ଦାୟକ ।। ୬ ।।

କହେ ଭଞ୍ଜ ବୀରବର ରମାବର
ପ୍ରଭୁ ଦୀନଜନ ରକ୍ଷ
ଭାସୁଛି ଏ ଭବ ଦୁସ୍ତର ଅର୍ଣ୍ଣବ
ମଧ୍ୟେ ମୁଁ ହୋଇ ନିରଖ ।। ୭ ।।





# ମଣିମା ଶୁଣିମା ହେଉ

*ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା*

ମଣିମା ! ଶୁଣିମା ହେଉ ଗରିବ ଡାକ
ନୀରକ୍ଷ ଜନକୁ ରଖ ପଙ୍କଜ ମୁଖ ।। ଘୋଷା ।।

କୃପା ସାଗର କହିଁକି          ମୋ ବେଳକୁ ଗଲା ଶୁଖି
ଜାଣିଲି ମୋ କର୍ମ ବାଙ୍କ ନୁହେଁ ସଳଖ ।। ୧ ।।

ଆତଙ୍କ ନାଶନ ବାନା          ନଶୁଣ ଭୃତ୍ୟ ବେଦନା
ଏବେ ହୋଇଯିବ ମନା କେ ଦେବ ଡାକ ।। ୨ ।।

ଦାସ ଯେବେ ନାଶ ଯିବ          କ୍ଷିତିରେ ଅକୀର୍ତ୍ତି ହେବ
କୀରତି ଚନ୍ଦ୍ରରେ ଲାଗିଯିବ କଳଙ୍କ ।। ୩ ।।

କହେ ସଦାନନ୍ଦ ଛାର          ନାହିଁ ଆନ ପ୍ରତିକାର
ଏ ଦୀନ ଅବସ୍ଥା ମୋର ନେତ୍ରେ ନଦେଖ ।। ୪ ।।







# ମୋ ଦୁର୍ଭାଗ୍ୟ କର ଚୂନା

*ଗୋବିନ୍ଦ ଭଞ୍ଜ*

କୃପାସିନ୍ଧୁ ! ଦୀନବନ୍ଧୁ ! କାହିଁକି କରୁଣା ଊଣା ?
ମୋହପରି ଦୀନହୀନ ଧରାଧାମେ ନାହିଁ ଶୁଣା ।। ଘୋଷା ।।

ଭାବି ଯା ନଥିଲି ମନେ          ବସାଇ ଉଚ୍ଚ ଆସନେ
ସୁଖ ସଙ୍ଗେ ଦୁଃଖ ଦେବା
ରୀତି ତ ନଥିଲା ଜଣା ।। ୧ ।।

ତୃଷାର୍ତ୍ତ ଜନେ ଆଦରେ          ଡାକି ବସାଇ ପାଶରେ
ପିଇବା ଆଗୁଁ ଭଣ୍ଡିଲ
ଯାଚି ସୁମଧୁର ପଣା ।। ୨ ।।

ବିତରି ସଂସାର ସାର-          ଫଳକୁ କଲ ଅସାର
ତାର କି ମୋ ଭାଗ୍ୟ ଦୋଷ
ଭାବି ମୁଁ ହେଉଛି ବଣା ।। ୩ ।।

ତୁମ୍ଭର ମଙ୍ଗଳମୟ          ଇଚ୍ଛାରେ ମୁଁ କରି ଲୟ
ନୋହୁଛି ଦୁଃଖିତ ପ୍ରଭୋ !
ପଡ଼ି ଏ ବିପଦେ ସିନା ।। ୪ ।।

ନୃପତି ସୁତ ଗୋବିନ୍ଦ          ଚିନ୍ତଇ ପଦାରବିନ୍ଦ
ହେ ମଧୁହାରୀ ମୁକୁନ୍ଦ
ମୋ ଦୁର୍ଭାଗ୍ୟ କର ଚୂନା ।। ୫ ।।





# କହଇ ମନ ଆରେ

ଭକ୍ତଚରଣ ଦାସ



କହଇ ମନ ଆରେ ମୋ ବୋଲ କର
କଳାଶ୍ରୀ ମୁଖବାରେ ଦେଖିବା ଚାଲରେ
କେତେ ଦିନକୁ ମନ ବାନ୍ଧିଛୁ ଆଣ୍ଠ
କି ଘେନି ଯିବୁ ତୋର ଛୁଟିଲେ ଘଟ ରେ ।। ୧ ।।

ଖଣ୍ଡି ଯେ ଖଣ୍ଡି ତୋର ପଞ୍ଜରା କାଠି
ଖାଉଣ ଥିବେ ଶ୍ୱାନ ଶୃଗାଳ ବାଣ୍ଟିରେ
ଖଟ ପଲଙ୍କେ ମନ ଶେଯାଇ ଶୋଉ
ଖଳ ଦୁର୍ଗନ୍ଧ ହେବ ଏ ତୋର ଦେହୁ ରେ ।। ୨ ।।

ଗଲେଣି ତୋ ସଙ୍ଗରୁ ଯେତେକ ଜନ
ଗଣ୍ଠିରେ ବାନ୍ଧି ନେଲେ କେ କେତେ ଧନ ରେ
ଗୁରୁ ଗୋବିନ୍ଦ ନାମ ତୁଣ୍ଡେ ନ ବୋଲୁ
ଗାଢେ ମଞ୍ଜିଣ ନିତ୍ୟେ ଧନ ଅର୍ଜିଲୁ ରେ ।। ୩ ।।

ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ
ଘଟ ଛୁଟିଲେ ତୋତେ ବୋଲିବେ ଭୂତ ରେ
ଘର ଘରଣୀ ଦେହ କିଳାଉ ଥିବ
ଘେନି ଜ୍ଞାତି କୁଟୁମ୍ବ ଶୁଦ୍ଧ ହୋଇବ ରେ ।। ୪ ।।

ଉଦ୍ଧାର ହେବୁ ଯେବେ ଭବସାଗରୁ
ଉପାୟ କରି ଏବେ ଭଜ ଶ୍ରୀଗୁରୁ ରେ
ଊଣା ହେଉଛି ଦିନୁଁ ଦିନ ଆୟୁଷ
ଆଉ ଏଣିକି ଅଛି କେତେ ବୟସ ରେ ।। ୫ ।।







ଚିତ୍ର ପ୍ରତିମା ପ୍ରାୟେ ଦିଶୁ ସୁନ୍ଦର
ଚିରି ଭିତର ଦେଖ କି ନାରଖାରରେ
ଚର୍ମ ଘେରିଛି ସିନା ଚଉରାଶିକି
ଚିର ତୁ ଦିଅ ନୀଳଗିରି ବାସୀଙ୍କି ରେ ।। ୬ ।।

ଛାର ଦେହକୁ ମନ କରୁ ତୁ ସଚ୍ଚ
ଛନ୍ଦ କପଟ ତେଜି ଗୋବିନ୍ଦ ଭଜ ରେ
ଛୁଇଁବେ ନାହିଁ ତୋତେ ବୋଲିବେ ମଡ଼ା
ଛ'ଖଣ୍ଡ କାଠ ତୋର ହୋଇବ ଲୋଡ଼ା ରେ ।। ୭ ।।

ଯମ ଯେ ନ ଜାଣଇଁ ବାଳୁତ ଯୁବା
ଜୀଇବୁ ବୋଲି ମନ କରିଛୁ ଅବାରେ
ଜଣେହେଁ ଏଥି କେହି ନାହିଁ ଅମର
ଜଗନ୍ନାଥକୁ ଭଜ ହେବୁ ଉଦ୍ଧାର ରେ ।। ୮ ।।

ଝୋଲା କନ୍ଥା ପାଛୋଡ଼ା ପିନ୍ଧାକୁ ରସୁ
ଝାଡ଼ ସଂସାରେ ମନ ଝସାଇ ପଶୁରେ
ଝୁଣ୍ଟି ପଡ଼ିଲେ ଉଠି ପାରିବୁ ନାହିଁ
ଝଡ଼ିଲା ପତ୍ର ବୃକ୍ଷେ ଲାଗିଛି କାହିଁ ରେ ।। ୯ ।।

ନିଶି ଦିବସେ ଥୟ ନୋହୁ ନା ମନ
ନିଦ୍ରାରେ ଦେଖୁଅଛୁ ଯଥା ସପନରେ
ନ ଯିବେ ସଙ୍ଗେ କେହି ଯିବୁ ତୁ ଏକା
ନାମମାତ୍ର ଅଟଇ ପଥକୁ ସଖା ରେ ।। ୧୦ ।।

ଟାଣ କରିଛୁ ମନ ସବୁ ମୋହର
ଟଳି ପଡ଼ିଲେ କେହି ନୋହେ କାହାର ରେ
ଟେରା ଭିତରେ ଯେହ୍ନେ ଅପୂର୍ବ ନାରୀ
ଟୋପ ଚଉରା ଅଛି ତୋ' ଦେହେ ପୂରି ରେ ।। ୧୧ ।।



ଠିକେ ମୁଁ କହୁଅଛି କର ମୋ କଥା
ଠିକେ ତୋ ଦେହେ ଅଛି ଶୂନ୍ୟ ଦେବତାରେ
ଠକି ଯିବୁଟି ଠିକ ମୃଣ୍ଡ ପଡ଼ିଲେ
ଠିକେ ଗୁରୁଙ୍କ ସେବା କର ତୁ ଭଲେ ରେ ।। ୧୨ ।।

ଡାକି କହୁଛି ମନ ଭଜ ଗୋବିନ୍ଦ
ଡର ଜଞ୍ଜାଳ ଯାଉ ତୋହର ହୃଦରେ
ଡଙ୍ଗା ଯେହ୍ନେ ଜଳରେ ଚାହାଁ ପଛକୁ
ଡେରିଥାନ୍ତି ଶ୍ରବଣ ଭକ୍ତ ଡାକକୁ ରେ ।। ୧୩ ।।

ଢୋଲ ଯେସନ ଢାଉଁ ଢାଉଁ ବାଜଇ
ଢାଳେ ତହିଁ ଭିତରେ କିଛି ହିଁ ନାହିଁରେ
ଢାଙ୍କି ରହିଛି ଦେହ ସବୁଟି ତୁଚ୍ଛ
ଢଳି ପଡ଼ିଲେ ସବୁ ହେବଟି ମିଛ ରେ ।। ୧୪ ।।

ଏଣେ ତୁ ଦେଇଥିଲେ ତେଣେ ପାଇବୁ
ଅଣ ଆୟତ୍ତ ବେଳେ କି ଘେନି ଯିବୁରେ
ଅଣ ନିଃଶ୍ୱାସୀ ହୋଇ ରହିବୁ ଦିନେ
ଅନେକ ଦୁଃଖ ଦେବେ ଯମ ଭୁବନେ ରେ ।। ୧୫ ।।

ତୁ ଯେବେ ବୋଲୁ ମୋର ଅର୍ଜିଲା ଧନ
ତୋ ଦେହ ନୋହେ ତୋର ଦେଖ ଏମାନ ରେ
ତୋହରି ସଙ୍ଗୁ ମନ ଗଲେଣି କେତେ
ତୁ ମିଥ୍ୟା କଥାକୁ ନଯାଉ ପରତେ ରେ ।। ୧୬ ।।

ଥିଲେ ଏ ସଂସାରରେ ଯେତେ ନୃପତି
ଥୟ କରି କେ ଭୋଗ କଲା ଏ ପୃଥିରେ
ଥୋଇଲା ଧନ ତୋର ଖଣ୍ଡ ଖାଇବେ
ଥାନ ତୋହରି ଘର କରି ରହିବେ ରେ ।। ୧୭ ।।







ଦେହେ ପୂରିଛି ତୋର ଅଶେଷ ରୋଗ
ଦିନ ଚାରିକି ସିନା ଏ ସୁଖ ଭୋଗ ରେ
ଦଣ୍ଡେହେଁ କେହି ତୋତେ ରଖିବେ ନାହିଁ
ଦଣ୍ଡୁ ଯେ ଥିବେ ଯମ-ଡଗରେ ନେଇ ରେ ।। ୧୮ ।।

ଧର୍ମ ଅଧର୍ମ କଥା ନ ଜାଣୁ ତୁହି
ଧନ୍ଦି ହେଉଛୁ ଧନ ଅର୍ଜିବା ପାଇଁ ରେ
ଧୋକା ରଖିଲେ ଧନ୍ଦା ଫିଟିବ ନାହିଁ
ଧର୍ମରେ ଆତଯାତ ହେଉଛି ମହୀ ରେ ।। ୧୯ ।।

ନିନ୍ଦିତ କର୍ମ କଲେ ନିନ୍ଦା ପାଇବୁ
ନରକେ ପଡ଼ି କେତେ ଦୁଃଖ ସହିବୁ ରେ
ନିମିଷେ ମାତ୍ର ମୁଖେ ନ ବୋଲୁ ହରି
ନାଶ ହେତୁକୁ କିପାଁ ଅଛୁ ଆବୋରି ରେ ।। ୨୦ ।।

ପାହିଲେ ନିଶି ଯେହ୍ନେ ରବି ଉଦ ଏ
ପଦ୍ମଲୋଚନ ସବୁ ଦେହେ ରଜ ଏ ରେ
ପ୍ରଭୁଙ୍କୁ ଆଶ୍ରେ କର ତରିବୁ ଯେବେ
ପାଦପଦ୍ମରେ ଚିତ୍ତ ଦିଅତୁ ଏବେ ରେ ।। ୨୧ ।।

ଫୁଲୁ ଗନ୍ଧ ହରିଲା ପ୍ରାୟେ ସମୀର
ଫିଟି ପଳାଇ ଯିବ ଜୀବ ତୋହର ରେ
ଫଳ ସଂସାରେ ଲାଭ ହରି ଭଜନ
ଫାଶ ଗଳାକୁ କିପାଁ କରିଛୁ ଧନ ରେ ।। ୨୨ ।।



ବେଳକୁ ବେଳ ତୋତେ କହୁଛି ମୁହିଁ
ବାନ୍ଧିଣ ନେବ ଯମ କି ଦୁଃଖ ଦେଇରେ
ବିକଳେ କାନ୍ଦୁଥିବୁ ଆକୁଳ ହୋଇ
ବେଳହୁଁ ଆଶ୍ରେ କରି ଭଜ ଗୋସାଇଁ ରେ ।। ୨୩ ।।



ଭେଳା ବୁଡ଼ିବ ହେଳା କଲେ କହୁଛି
ଭଙ୍ଗା ନାବରେ ନେବା ସିନ୍ଧୁ ତରିଛି ରେ
ଭାବକୁ ନିକଟ ସେ ଅଭାବେ ଦୂର
ଭକତ ଦାସ କହେ ଜୀବନ ଛାର ହେ ।। ୨୪ ।।

ମିଛ ମାୟା ସଂସାର ନୋହେ କାହାରି
ମଲା ବୋଲିଣ ଦିନେ ପଡ଼ିବ ହୁରି ରେ
ମହୀ ଭିତରେ କେହି ରହିବେ ନାହିଁ
ମଲା ବୋଲି କାନ୍ଦୁଛୁ ମରିବୁ ତୁହିରେ ।। ୨୫ ।।

ଜନମ ହେଲେ ପ୍ରାଣୀ ଅବଶ୍ୟ ମରି
ଯଶ ରଖିବୁ ଯେବେ ଭଜ ଶ୍ରୀହରିରେ
ଯମ ଯେ ନେବ ବାନ୍ଧି ହେବୁ ମେଲାଣି
ଜଗନ୍ନାଥ ମହିମା ଏଣିକି ଆଣି ରେ ।। ୨୬ ।।

ରଙ୍ଗା ପସରା ସିନା ଭବସାଗର
ରଙ୍ଗ ଭିତରେ ଅଛି କି ନାଗଖାର ରେ
ରୂପ ପ୍ରତିମାକୁ ତୁ ପରତେ ନ ଯା
ରହିବେ ନାହିଁ କେହି ରଜା ପରଜା ରେ ।। ୨୭ ।।

ଲୋଚନେ ଦେଖି କର୍ଣ୍ଣେ ଶୁଣୁଛି ନିତି
ଲୋଭ କରି ଅର୍ଜିଲୁ ଧନସଂପତ୍ତି ରେ
ଲୋଭଟି ସର୍ବନାଶ କରଇ ମନ
ଲୋଡିଲେ ନପାଇବୁ ଆଉ ଜୀବନ ରେ ।। ୨୮ ।।

ବିଅର୍ଥେ ବହିଅଛୁ ଦୁର୍ଲଭ ଦେହ
ବିଷୟା ବିଷେ ଆଉ ନବଳା ସ୍ନେହରେ
ବୁଡ଼ି ଯିବଟି ମୂଳ ଲୋଭ ସରିବ
ବେଳହୁଁ ଆଶ୍ରେ କରି ଭଜ ମାଧବ ରେ ।। ୨୯ ।।





ଶ୍ରୀକୃଷ୍ଣ ପାଦପଦ୍ମେ ଦିଅ ତୁ ମନ
ସରିଲେ ନପାଇବୁ ଆଉ ଜୀବନରେ
ଶ୍ରୀକୃଷ୍ଣ ନାମ ଗୋଟି କର ଭଜନ
ଶ୍ରୀକୃଷ୍ଣ ପାଦପଦ୍ମେ ଦିଅ ତୁ ଧ୍ୟାନ ରେ ।। ୩୦ ।।

ସନ୍ତୋଷ ଚିତ୍ତେ ତୁହି ହରିଙ୍କି ଭଜ
ସଂସାରେ ପଡ଼ି ଆଉ ନପାଅ ଲାଜ ରେ
ସବୁଟି ମିଛ ହରି ନାମଟି ସତ
ଶ୍ରୀକୃଷ୍ଣ ପାଦ ପଦ୍ମେ ଦିଅତୁ ଚିତ୍ତ ରେ ।। ୩୧ ।।

ସତ୍ୟ ମଣୁଛୁ ତୁହି ଭବ ସାଗର
ସରି ଯାଉଛି ପରମାୟୁ ତୋହର ରେ
ସନ୍ତୋଷ ହୋଇ ଦୃଢ଼େ ଭଜ ଶ୍ରୀହରି
ଶୋକ ସାଗରୁ ଯେବେ ହୋଇବୁ ପାରି ରେ ।। ୩୨ ।।

ହୁଡ଼ିଲେ ଯେତେ ଜନ ହରିନାମକୁ
ହୀନଗତିକି ଗଲେ ବୁଡ଼ି ତଳକୁ ରେ
ହଜିଲେ ଦେହ ଆଉ ପାଇବୁ ନାହିଁ
ହାଟ ବସାଇ ଥିବେ ତୋ ଦେହ ପାଇଁ ରେ ।। ୩୩ ।।

କ୍ଷୟ ଦୁର୍ଲ୍ଲଭ ଦେହ ହୋଏ ଆୟୁଷ
କ୍ଷୟ ନଯିବ ନାମ ହୃଦରେ ଘୋଷ ରେ
ଛାର ଦେହକୁ ମନ ନଯା'ବିଶ୍ୱାସ
ଛାର ଦୁର୍ବୁଦ୍ଧି କହେ ଭକତ ଦାସ ରେ ।। ୩୪ ।।





# ଚନ୍ଦନ ଲାଗି ସମୟେ

*ପିଣ୍ଡିକି ଶ୍ରୀଚନ୍ଦନ*



ଚନ୍ଦନ ଲାଗି ସମୟେ ଚିନ୍ତ ଚିନ୍ତାମଣି କି ।।
ସୁବେଶର ଲାଗି ଶେଷ ଲାଗି ହୋଇ ଝୀନବାସ
କଟୀରେ ସୁବର୍ଣ୍ଣଝୁମ୍ପା, ଆହା କେଡ଼େ ଠାଣି କି ।।

ତିନିବାଡ଼େ ତିନିଲୋକ ସେବକ ପଶୁପାଳକ
ରତ୍ନସିଂହାସନେ ଉଭା ଯୋଡ଼ି ବେନି ପାଣି କି ।।

ଚନ୍ଦନ ସଂସ୍କାର ସାରି ପ୍ରଭୁ ଅଙ୍ଗେ ଲାଗିକରି
ହରି ଭଦ୍ରା ସୁଦର୍ଶନ କମଳା ଘରଣୀ କି ।।

ହଡ଼ପ ନାୟକ ରହି ବିଡ଼ିଆ ପତ୍ରକୁ ବହି
କରାଇ ମଣୋହି ତହିଁ କମ୍ବୁଚକ୍ରପାଣି କି ।।

ଡାକଇ ଖୁଣ୍ଟିଆ ଦ୍ୱିଜ ମଣିମା ଭୋ ଦେବରାଜ
ଅଖିଳ ବ୍ରହ୍ମାଣ୍ଡ ନାଥ ପ୍ରଭୁମନ ଜାଣିକି ।।

ନିଜ ନିଜ ଗୁଣାବଳୀ ବୀଣା ନାଦେ କୁତୁହଳୀ
ପଳାଇ ଦୂରିତ ପାପ ହରିଧ୍ୱନି ଶୁଣି କି ।।

ସେକାଳେ କଳା ଶ୍ରୀମୁଖ ଶୁଣନ୍ତି ସକଳ ଦୁଃଖ
ଦର୍ଶନେ ପ୍ରସନ୍ନ ହୋଇ ରଖ ଦୁଃଖୀ ଶ୍ରେଣୀ କି ।।

ଆର୍ତ୍ତେ ଶ୍ରୀଚନ୍ଦନ ଭାଷେ ଚିନ୍ତାବଳୀ ମଧ୍ୟେ ଭାସେ
କରୁଣା ନାବେ ବସାଇ କୂଳେ ରଖ ଆଣି କି ।।









# ହାତୀ ଆସନ୍ତି ମୋ

*ମାଗୁଣି ପଟ୍ଟନାୟକ*

ହାତୀ ଆସନ୍ତି ମୋ ଅଚଳ ମହାମେରୁ ।
ଭକତି ଭାବକୁ ଆସନ୍ତି ହରି ଶ୍ରୀନୀଳକନ୍ଦରୁ ।
ପଦ ଦ୍ୟୁତି କଳା ଦୋହଲାଇ ମାଳା ଚନ୍ଦ୍ର ସୂର୍ଯ୍ୟ ବେନି ଆଖି,
ଭକ୍ତଜନମାନେ ମୁକତି ଲଭନ୍ତି କଳା ନୟନକୁ ଦେଖି ।
ହାତୀ ଆସନ୍ତି ମୋ ।।୧।।
ହାତୀର ଓଜ ବିସ୍ତାର ଭୁଜ ଶୋଭା ଅଣ୍ଟା ଗୋଟି ତାର ସରୁ,
ସଧୀରେ ସଧୀରେ ଚଲାଇ ଆଣନ୍ତି ଶ୍ରୀନୀଳଗିରି ମଧ୍ୟରୁ ।
ହାତୀ ଆସନ୍ତି ମୋ ।।୨।।
ବାହା ସୁବିସ୍ତାର ଗଳେ ବନମାଳ କଟିରେ କିଙ୍କିଣୀ ସାଜେ,
ଚରଣ କମଳ ବାଜେଣି ନୂପୁର ଝୁମୁକୁ ଝୁମୁକୁ ବାଜେ ।
ହାତୀ ଆସନ୍ତି ମୋ ।।୩।।
ବଜାଇ ମୃଦଙ୍ଗ ଭେରୀ ତୂରୀ ବାଦ୍ୟ ଶଙ୍ଖ ଧ୍ୱନି ନିରନ୍ତରେ,
ଦୁଲୁ ଦୁଲୁ ହୋଇ ଦୁଲକି ପଡ଼ନ୍ତି ପାଟ ମୁଚୁଳି ଉପରେ ।
ହାତୀ ଆସନ୍ତି ମୋ ।।୪।।
ମୃଦଙ୍ଗ ନିନାଦ ଅତି ହିଁ ଶବଦ କିଣି କିଣି ବାଦ୍ୟ ବାଜେ,
ବ୍ରହ୍ମାଣ୍ଡଯାକକୁ ଚଲାଇ ଆଣନ୍ତି ଚତୁରଙ୍ଗ ବଳ ସାଜେ ।
ହାତୀ ଆସନ୍ତି ମୋ ।।୫।।
ଦଇତାପତିଏ ଡୋର ଧରିଥାନ୍ତି ହୋଇଥାନ୍ତି ଏକ ମେଳ,
କେହି ବୋଲୁଥାନ୍ତି ମଣିମା ମଣିମା କେହୁ ବୋଲେ ଚାଲ ଚାଲ ।
ହାତୀ ଆସନ୍ତି ମୋ ।।୬।।
ଲକ୍ଷେ ପାଟଛତ୍ର ଉପରେ ଚାମର ଥରେ ବିଜେ କଲେ ହରି,
ଅଧମ ମାଗୁଣି ଶରଣ ପଶୁଛି ଗୀତ ସାତ ପଦ ସାରି ।
ହାତୀ ଆସନ୍ତି ମୋ ।।୭।।





# ଚିତ୍ତ ଚିନ୍ତ ଜଗନ୍ନାଥ କଳାମୁଖକୁ

*ବ୍ରଜନାଥ ବଡ଼ଜେନା*



ଚିତ୍ତ ଚିନ୍ତ ଜଗନ୍ନାଥ କଳାମୁଖକୁ ।
ପାଇବୁ ପରମାନନ୍ଦ ସୁଖକୁ ରେ ।
ଅରୁଣ ରଙ୍ଗ ଅଧର ଆହା କେଡ଼େ ମନୋହର
ହସୁଥିଲା ପ୍ରାୟେ ଦିଶେ ପାଖକୁ ରେ ।।

ପ୍ରବଳ ବିପୁଳ ବାହା ଟେକିବା ଭଙ୍ଗିକି ଚାହାଁ
ଯାହା ତଳେ ରଖନ୍ତି ଅରକ୍ଷକୁ ରେ ।।

ସୁନିଶ୍ଚଳ ଚକାଆଖି ଚାହିଁଲେ କରି ନିରେଖି
ନ ଯିବୁ ଯମ ଦଣ୍ଡ ପାଖକୁ ରେ ।।

କରୁଣାରେ ପରିପୂର୍ଣ୍ଣ ଢାଳେ ପଙ୍କଜ ନୟନ
ତାରୁଛନ୍ତି ପାପୀ ଲକ୍ଷ ଲକ୍ଷକୁ ରେ ।।

ଅଟନ୍ତି ସେ ଭାବଗ୍ରାହୀ ଶ୍ରୀବତ୍ସ ପାଦକୁ ବହି
ଅଛନ୍ତି ଅନାଉ କିନା ବକ୍ଷକୁ ରେ ।।

କର୍ଣ୍ଣେ ମକର କୁଣ୍ଡଳ ଝଲକେ ଗଣ୍ଡମଣ୍ଡଳ
ନାହିଁ ତ ଉପମା ଦେବା ଲକ୍ଷ୍ୟକୁ ରେ ।।

କପୋଳେ ରତନ ଚିତା ଦେଖି ଧରି ନୋହେ ଚେତା
ତଥିପରେ ହେମ ରାହୁ ରେଖକୁ ରେ ।।

ବ୍ରଜନାଥ ବୋଲେ କାଳଦେବତା ନ ଧରୁ ବାଳ
କରିଥା କରୁଣାସିନ୍ଧୁ ପକ୍ଷକୁ ରେ ।।





# ଆହେ ପ୍ରଭୁ କଳାଶ୍ରୀମୁଖ

*ହାଡ଼ି ଦାସ*

ଆହେ ପ୍ରଭୁ କଳାଶ୍ରୀମୁଖ !
ତୁମ୍ଭ ରଥଯାତ ଦେଖି ନ ପାରିଲି,
ଦେବାରୁ ଦାରୁଣ ଦୁଃଖ ।।

କେତେ କେତେ ମହା ଭକତମାନଙ୍କୁ,
କଢ଼ାଇ ନେଇଛ ପଥ ।
ମୋତେ ଏତେବେଳେ ଏକା କରାଇଲ,
ଦେଖିବାକୁ ଅସମର୍ଥ ।।

ଯେବେ ନିକଟକୁ ନ ନେଇ ଗୋସାଇଁ
ମନେ କେଉଁ କଥା ପାଞ୍ଚି ।
ଏଇଠାରେ ତୁମ ରଥ ମୁଁ କରିବି,
ଆସିବ ନା ତୁମେ ଘୁଞ୍ଚି ।।

ଦେଖାଯାଉ ଭଲା ହଟିଆ ନାଗର,
କେତେ ଲଗାଇବୁ ହଟ ।
ନିଶ୍ଚୟ କରିବି ଛତିଆ ଗ୍ରାମରେ,
ତୋହରି କଳପବଟ ।।

କାଳକାଳକୁ ଏ କଥା ରୁହାଇବି,
ଦେଖିବେ ସଂସାର ଜନେ ।
ହାଡ଼ିଆ କମାର ଆଣ୍ଡ କି ଭାଙ୍ଗିବ,
ଶ୍ରୀହରି ବୋଲି ବଦନେ ।।





# ଜୟ ଜୟ ଜଗନ୍ନାଥ

*ଅଭିମନ୍ୟୁ ସାମନ୍ତସିଂହାର*

ଜୟ ଜୟ ଜଗନ୍ନାଥ ଚଢ଼ି ନନ୍ଦିଘୋଷ ରଥ
ଅନ୍ତର୍ଯ୍ୟାମୀ ! ଅନ୍ତର୍ଗତ ବାରତା ଜାଣ
ଦୁଃଖୀ ଜଣାଇଲେ ଦୁଃଖ କେବେହେଁ ନୁହଁ ବିମୁଖ
ଦୁଃଖ ଏଡ଼ି ସୁଖ ତାକୁ ଦିଅ ପ୍ରମାଣ
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।। ୧ ।।

ପୂର୍ବେ ନରସିଂହ ରୂପେ ସ୍ତମ୍ଭରୁ ବାହାରି ଆପେ
ହିରଣ୍ୟ ରାଜାର ହୃଦ ନଖେ ଚିରିଲ
ତା' ପୁତ୍ର ପ୍ରହ୍ଲାଦକୁ ସ୍ୱର୍ଗେ ଇନ୍ଦ୍ର କଲ ତାକୁ
ଧ୍ରୁବ କୁମରକୁ ଅଭିମାନୁଁ ତାରିଲ
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।। ୨ ।।

ଦୁର୍ଯ୍ୟୋଧନ ସଭାତଳେ ଦ୍ରୌପଦୀଙ୍କୁ ନେଲାବେଳେ
ସତୀ ବିବସନ କାଳେ ଚିନ୍ତିଲେ ଯହୁଁ
ଆତଙ୍କ ନାଶନ ବାନା ବିପଦକୁ ବନ୍ଧୁସେହ୍ନା
ପଞ୍ଚାବନ କୋଟି ବସ୍ତ୍ର ଦେଇଚି କାହୁଁ
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।। ୩ ।।

ବନଜୀବ ପଶୁ ଜାତି ତା' ସଙ୍ଗେ ବାଳ ସନ୍ତତି
ଆପେ ଗର୍ଭବାସ ହୋଇ ବୁଲେ ବନରେ
ଶବର ବିନ୍ଧିଲା ବାଣ ମୃଗୀ ଚିନ୍ତେ ନାରାୟଣ
ବଜ୍ର ମାରି ବ୍ୟାଧ ପ୍ରାଣ ନେଲଟି ଖରେ
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।। ୪ ।।

ଗଜରାଜ ଜଳ ପିଉଁ ଗ୍ରାହ ପୀଡ଼ା କଲା ଯହୁଁ
ଆତଙ୍କେ ଡାକିଲା ଗଜ ରଖିଲ ହେଳେ
ଆତଙ୍କ ନାଶନ ବାନା ବିପଦକୁ ବଜ୍ରସେନ୍ନା
ଅଦଭୁତେ ଗ୍ରାହ ଶିର ଛେଦିଲ ଜଳେ
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।। ୫ ।।
ବାଳି ଦଶାନନ ମାରି ସୁଗ୍ରୀ ବିଭୀଷଣ ତାରି
ଅକଣ୍ଟକ ରାଜ୍ୟ ଦେଲ ସୁବର୍ଣ୍ଣପୁରୀ
ଉଗ୍ରସେନେ ଶାଢ଼ୀ ଦେଇ ଯୁଧିଷ୍ଠିରଙ୍କି ହେଲ ସ୍ନେହୀ
ଦୁର୍ଯ୍ୟୋଧନ ଶତ୍ରୁଭ୍ରାତା କୁଟେଣ ମାରି
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।। ୬ ।।
ଦାମୋଦର ପଣ୍ଡା ଦୁଃଖ ଆଚମ୍ବିତ କଥା ଦେଖ
ଭିକ୍ଷାକୁ ମାଗିଣ ସେହୁ ବଞ୍ଚଇ ଦିନ
ସେ ଗଲା ଦ୍ୱାରକାପୁର ସେବିଲା ତୁମ୍ଭ ପୟର
ବିପୁଳ ସମ୍ପତ୍ତି ଦେଲ ହେ ଭଗବାନ
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନଶୁଣ ଏବେ ।। ୭ ।।
ଦୀନ ଅଭିମନ୍ୟୁ ମାନ କହିଲେ କିମ୍ପା ନଶୁଣ
ଆହେ ପ୍ରଭୁ ଶଙ୍ଖଚକ୍ର ସାରଙ୍ଗଧର !
ଲକ୍ଷ ଯୋଜନରେ ଥାଇ ଡାକିଲେ ଶୁଣ ଗୋସାଇଁ
ତେଣୁ କରି ଭରସାଟି ଅଛି ମୋହର
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନଶୁଣ ଏବେ ।। ୮ ।।





# ଭୁଜତଳେ ମୋତେ ରଖ

ବୀରକିଶୋର ଦେବ

ଭୁଜତଳେ ମୋତେ ରଖ ମହାବାହୁ !
ବାହୁତଳେ ମୋତେ ରଖ
ବିପୁଳ ଭୁଜ ବିସ୍ତାରି ଦେଲେ ଛାର
କି କରି ପାରିବ ଦୁଃଖ ।। ଘୋଷା ।।

ସଜ ହୋଇଥିବ ନନ୍ଦିଘୋଷ ରଥ
ମୁଁ ଥିବି ତୁମ୍ଭ ସେବାରେ
ତୁମ୍ଭେ ଦୀନବନ୍ଧୁ ! ନିର୍ଦ୍ଦୟ ହୋଇଲେ
କି ବୋଲିବେ ଏ ସଂସାରେ ।। ୧ ।।

ଏ ଗଜରାଜ କ୍ଷିତି ପତି ସଂପତ୍ତି
ରତିଏ ରୁଚଇ ନାହିଁ
ଭୁବନମୋହନ ଚକା ନୟନକୁ
ଯେତେବେଳେ ଦିଏ ଚାହିଁ ।। ୨ ।।

ଦିନକୁ ଦିନତ ଦୁଃଖ ଅତିରେକ
ସୁଖତ ଦିଶଇ ନାହିଁ
ଭାସି ଯାଉଅଛି ଏ ଭବ ସାଗରେ
ରକ୍ଷାକର ଭାବଗ୍ରାହୀ ।। ୩ ।।

ଶ୍ରୀକ୍ଷେତ୍ର ନବରେ ମହା ଐଶ୍ୱର୍ଯ୍ୟରେ
ଥିଲେ ହେଁ କମଳା ସାଇଁ
ବାଇଶିପାବଚ୍ଛ ନ ଉଠିବା ଯାଏଁ
ଆନନ୍ଦ ନପାଏ କାହିଁ ।। ୪ ।।





ସେବାରୁ ଅନ୍ତର ହେଲି ଯେବେ ପ୍ରଭୁ
ଏ ପ୍ରାଣ ଥିବ କିପାଇଁ
ଓହ୍ଲାଇ ନ ଦିଅ କିମ୍ବା ମୋ ମଥାରୁ
ଜଞ୍ଜାଳ ଭାର ଗୋସାଇଁ ।। ୫ ।।

ମୁଁ ଛାର ପତିତ ଭରସା ରଖିଛି
ଶ୍ରୀରଙ୍ଗା ଚରଣ ତଳେ
ଶ୍ରୀ ବୀରକିଶୋର ମହାରାଜା ଭଣେ
ଦୟାକର ଏତେବେଳେ ।। ୬ ।।





# ପତିତପାବନ ବାନା

ବୀରକିଶୋର ଦେବ

ପତିତପାବନ ବାନା ଆଉ କେତେ ବେଳକୁ
ଭାସିଗଲି ଭବଜଳେ ନାବ ଦିଅ କୂଳକୁ ।। ଘୋଷା ।।

ରୋପିବାର ବୃକ୍ଷଗୋଟି କାଟୁଅଛ ମୂଳକୁ
ତିନିପୁରେ ଅପକୀର୍ତ୍ତି ହେବ ଆଦି ମୂଳକୁ ।। ୧ ।।

ଦୂରେ ଥାଇ ଡାକଦେଲେ ଡେରିଥାଅ କର୍ଣ୍ଣକୁ
ନିକଟରେ ନ ଶୁଣିଲ ମୋ କର୍ମ ଅବଳକୁ ।। ୨ ।।

ଲକ୍ଷେ ଯୋଜନରେ ଗଜ ଡାକ ଦେଲା ତୁମ୍ଭଙ୍କୁ
ନକ୍ର ନାଶିବାକୁ ଚକ୍ର ଦେଲ ପେଶି ଜଳକୁ ।। ୩ ।।

ନକ୍ଷତ୍ର ଦିହୁଡ଼ି ଜଳେ ସନ୍ଧ୍ୟା ଦୀପ ବେଳକୁ
ଲମ୍ବିଛି ଦୟାଣମାଳ ପଦ୍ମପାଦ ତଳକୁ ।। ୪ ।।

ଯୋଗୀଜନମାନେ ହୃଦେ ଧ୍ୟାଉଛନ୍ତି ଯାହାକୁ
ଭଣିଲେ ବୀରକେଶରୀ ଆଶା ପାଦ ତଳକୁ ।। ୫ ।।



# ବାଧିଲା ଜାଣି କ୍ଷମା

କବିସୂର୍ଯ୍ୟ ବଳଦେବ ରଥ

ବାଧିଲା ଜାଣି କ୍ଷମା କର ନୋହିଲେ ରମା-
ରମଣ ଦଣ୍ଡ ଦିଅ ଟାଳି
ତୁମ୍ଭଙ୍କୁ ଜଗନ୍ନାଥ ! ଆଜ ମୋ ମନୋରଥ
ଭରତି କରିଦେବି ଗାଳି
ହେ କୃପାନିଧି !
କରୁଣା ସିନ୍ଧୁ ବୋଲି କରି
କହନ୍ତି ବୁଧେ ଡରି ମରି
କାଳସର୍ପ ଆପଣ କବଳ କର ପ୍ରାଣ
ପବନମାନଙ୍କୁ ସବୁରି ହେ ।। ୧ ।।

ଜଳଧି ଅନ୍ତେ ନିଜ ଘର ଦେବାଧିରାଜ
ବୁଡ଼ାଇ ଦେଇଛ ଆପଣ
ତୁମ୍ଭରି ସିନା ଘେନ ଆଶ୍ଚର୍ଯ୍ୟ ନୋହେ ଆନ
ଜନର ଘରବୁଡ଼ା ପଣ
ହେ କୃପାନିଧି
ଭୁଜଙ୍ଗ ସାମ୍ୟ ଆମ୍ଭ ତୁଲେ
ବତାଅ ବୋଲି ଆଜ୍ଞା ହେଲେ
ମୁଁ ନୁହେଁ ଘରବୁଡ଼ା ବତାଇବାକୁ ଛିଡ଼ା
ହୋଇଛି ବତାଇବି ଭଲେ ହେ ।। ୨ ।।

ତାହାକୁ ବୋଲି ଚକ୍ରୀ ଚକ୍ର ଥିବାରୁ ଚକ୍ରୀ
ତୁମେତ ବୋଲାଅ ମଣ୍ଡଳେ



ବେଢାରେ କୁଣ୍ଡଳୀ ସେ ଆପଣ ତ ବିଶେଷେ
ଭୂଷିତ ମକର କୁଣ୍ଡଳେ
ହେ କୃପାନିଧି
ଅଦୃଶ୍ୟ ହେବାରୁ ତା' ପାଦ
ତାହାକୁ ବୋଲି ଗୂଢ଼ପଦ
ଆପଣା ଚରଣ ତ ବିରଞ୍ଚି ଗୁପତ
କାହିଁ ତା'ଠାରୁ ତୁମ୍ଭ ଭେଦ ହେ ।। ୩ ।।

ହେବ ନା ଅବଧାନେ ତାହାକୁ ତ୍ରିଭୁବନେ
ବୋଲନ୍ତି କାକୋଦର ନରେ
ଏ ତ୍ରିପିଷ୍ଟପ ଯାକ ମଧ୍ୟେ ଗୋଟିଏ କାକ
ନାହିଁକି ତୁମ୍ଭର ଉଦରେ
ହେ କୃପାନିଧି
ବିବରେ ସେ ଅତି ଲମ୍ପଟ
ବିବର ବିହଙ୍ଗମ ରାଟ
ବିଧିରେ ସେ ଲମ୍ପଟ, ଆପଣ ସେତ ପଟ-
ପଟଳେ ହୋଇ ଅଛ ସ୍ଫୁଟ ହେ ।। ୪ ।।

କାନ ନଥାଇ ଆଖି ଭୁଜଙ୍ଗଠାରେ ଦେଖି
ନୟନଥିବା ବୋଲି ତାକୁ
କହ କମଳାନନ ! କାହିଁକି ତୁମ୍ଭ କାନ
ସର୍ପ ବୋଇଲେ ଚଳିବାକୁ
ହେ କୃପାନିଧି
ଫଣୀ କାୟାକୁ ବୋଲି ଭୋଗ
ଥିବାରୁ ସେ ଦୁଇ ସଂଯୋଗ
ତାହାକୁ ବୋଲି ଭୋଗୀ, ତୁମ୍ଭେ କି ନୁହ ଭୋଗୀ
କରୁଯା' ଅଛ ମହାଭୋଗ ହେ ।। ୫ ।।





ଯେବେ ଭୁଜଙ୍ଗ ନୁହଁ କାଳୀୟଠାରେ ଦ୍ରୋହ
କଲ କାହିଁକି ଏଡ଼େ କରି
କେତେ ନ ଥିଲେ ଗୋପେ ତୁମ୍ଭେ କାହିଁକି କୋପେ
ତାହାକୁ ଦେଲ ପ୍ରାଣେ ମାରି
ହେ କୃପାନିଧି
ତାହାରି ନାମେ ତୁମ୍ଭ ନାମ
ଅଦ୍ୟାପି ହୋଇଛି ଜନମ
ଯେବେ ସ୍ୱଗୋତ୍ର ଦୋହ ନଥାନ୍ତା ନାଥ କହ
କିମ୍ପାଇ ହୁଅନ୍ତା ଏ କ୍ରମ ହେ ।। ୬ ।।

ଜାଣି ବାଳୁତ କାଳୁ ଲବଣୀ ହାଣ୍ଡି ତଳୁ
ଧରି ପାଶରେ ଦୃଢ଼େ ଭିଡ଼ି
ଦୟା ନକରି ତିଳେ ଯାମଳା ତରୁ ତଳେ
ଜନନୀ ନେଇ ଦେଲେ ଛାଡ଼ି
ହେ କୃପାନିଧି
ଯେତେକ ଥିଲା ଗର୍ଭେ ପଡ଼ି
ଜୀର୍ଣ୍ଣ ହେବାକୁ ହେଲ ଭିଡ଼ି
ତିନି ଜଗତ ଯାକେ ଜାଣିତ ଥିବେ ଲୋକେ
ସେ ତରୁ ଯିବାର ଉପୁଡ଼ି ହେ ।। ୭ ।।

ବ୍ରହ୍ମା ଶଙ୍କର ମୁଖ୍ୟ ଦେବଙ୍କଠାରୁ ମୋକ୍ଷ
ପ୍ରଧାନ ଧନ ଗୂଢ଼ କଲ
ପତିତକୁ ନ ପୋଷିବାରୁ କ୍ରମରେ ଆଶୀ-
ବିଷ ପରାଏ ଆଭାସିଲ
ହେ କୃପାନିଧି
ଅସାବଧାନେ ଗଲେ ମିଳି
ଗୋଟିକୁ ଗିଳଇ କୁଣ୍ଡଳୀ
ଅଗଣିତ ବ୍ରହ୍ମାଣ୍ଡ ହାଣ୍ଡି ମଣ୍ଡଳୀ ଚୁଣ୍ଡ
କରି ଆପଣ ଅଛ ଗିଳି ହେ ।। ୮ ।।



ଅହିତ ବୋଲାଏ ସେ ଏକ ଅକ୍ଷର କୋଷେ
ଅହିତ ବୋଲାଅ ନିପୁଣ,
କଂସ ପ୍ରମୁଖାସୁର ବିପକ୍ଷମାନଙ୍କର
ଅହିତ ହୋଇଛ ଆପଣ
ହେ କୃପାନିଧି
ଜଗତେ ଧରି ଯେବେ ଅହି
ଘଟ ଗୋଟିକେ ନେଇ ଥୋଇ
ଅଛ ଯାବତ ଘଟେ ବଞ୍ଚାଅ ଯେ କପଟେ
ମୋର ହାବୁଡୁ ଯିବ କାହିଁ ହେ ।। ୯ ।।

କେଉଁ ଶିଶୁ କାମିନୀ ସ୍ତନ୍ୟ ପାନରୁ ଘେନି
ଜୀବନ ଯାଇଛି ଜଗତେ,
ଶୋଷି ପୂତନା ପ୍ରାଣ ଘେନିବାର ଜୀବନ
ନାହିଁକି ତୁମ୍ଭ ଦିବ୍ୟ ଚିତ୍ତେ ?
ହେ କୃପାନିଧି
ସକଳ କଥା ମୋର ଦେଖି
ଅଛନ୍ତି ଲକ୍ଷ ଲକ୍ଷ ସାକ୍ଷୀ
ବ୍ରଜେ ଭୁଜଙ୍ଗ ଚାଲି କରି ମୁଁ ନାହିଁ ବୋଲି
ଛୁଅଁ ତ ଥରେ ଚକା ଆକ୍ଷି ହେ ।। ୧୦ ।।

ତୁହେଁ ଆବାସ ଘର ମାନସ ସରୋବର
ଶୁଭିଲା ନାଗେଶ୍ୱର ରବ,
କ୍ଷଣେ ନ ରହି ଧାଇଁ ଗଲଟି କାହିଁ ପାଇଁ
ଆଉ ନଥିଲେ କେତେ ଦେବ
ହେ କୃପାନିଧି
ମନ୍ତ୍ର ଜାଣିବା ଲୋକେବଶ
ହୁଅନ୍ତି ସବୁ ଆଶୀବିଷ
ମନ୍ତ୍ରାଧୀନ ତ ତୁମେ ବଞ୍ଚାଉ ଅଛ ଦମେ
ଭୁଜଙ୍ଗ ତୁହିଁ ଆଉ କିସ ହେ ।। ୧୧ ।।





କହଇ କବିସୂର୍ଯ୍ୟ ନାଥ ତୁହଁ ଅଧୈର୍ଯ୍ୟ
ଏଣିକି ମହତ ନ ଯାଉ,
ମୁଁ ତୁମ୍ଭ ପରିଚାର ଜାଣିଲେ କି ବିଚାର
ଇତରେ ନ ଜାଣନ୍ତୁ ଆଉ,
ହେ କୃପାନିଧି
ଯେତେବେଳେ ମୋ ଅନ୍ତ ହେବ
ଏତିକି ମାତ୍ର ମୋତେ ଦେବ
ପରେତରାଟ ଦ୍ୱାର ସୀମାରୁ ପରିହାର
କରାଇ ଯହିଁ ତହିଁ ନେବ ହେ ।। ୧୨ ।।





# ଅନୁସରିତ

*ଗୋପାଳକୃଷ୍ଣ ପଟ୍ଟନାୟକ*

ଅନୁସରିତ
ପ୍ରଭୁ ! କାଳ ଯାକ ଗଲା ସରିତ
କଣ ବିତରଣ କଲେ କେତେ ଊଣା
ହୁଅନ୍ତା କରୁଣା ସରିତ ।। ଘୋଷା ।।
ଅଶରଣ ଜନ ବଂଧୁପଣ ଯଶ
ସଂସାରେ ହୋଇଛି ଉଦିତ
ପଥର ହୋଇ ପଥରେ ପଡ଼ିଥିଲା
ଅହଲ୍ୟାକୁ ଦେଲ ତାରିତ ।। ୧ ।।
ପାଞ୍ଚାଳୀକି ଦୁଃଶାସନ ଘଞ୍ଚାଳିଲା
ବଞ୍ଚାଇଲ ବାସ ଦେଇତ
ଘୁଞ୍ଚାଇଲ ନାହିଁ ମୋ ଛାର କଦନ
ପୋଛାଇଲ ନେତ୍ରୁ ବାରିତ ।। ୨ ।।
କାହିଁଥିଲା ଚକ୍ର କାହିଁଥିଲା ନକ୍ର
ପଲକ ପତନ ନୋହୁତ
ଛିଡ଼ିଗଲା ମଥା ରହିଗଲା କଥା
ଡାକିଲା ମାତ୍ରକେ କରୀ ତ ।। ୩ ।।
କାଳ କିଙ୍କର ଭୟରେ ଅଜାମିଳ
ପୁତ୍ରୋପଚାରରେ ଡାକିତ





ପରମପଦ ପାଇଲା ଆପଣଙ୍କ
ନାମ ମହିମା ଏପରିତ ।। ୪ ।।

ନିରୂପାଧି କୃପା କର ବୋଲି ବିଧି
ଭବାଦିରେ ଥାଉ କଥିତ
ମୁଁ କଲା ଦୋଷକି ? ନାଶିଛତ ବକୀ
ବିଷ ପିଆଉଁ ତା ଦୂରିତ ।। ୫ ।।

ଗୋପାଳ କୃଷ୍ଣ କହେ ଜଗନ୍ମଙ୍ଗଳ
ଯାହା କରିବ ତୁମ୍ଭ ଚିତ୍ତ
ଆପଣା କୃପାକୁ ପଣକୁ ବଳି ମୋ
ଦୁଷ୍କୃତ ନୁହଇଁ ଭାରୀତ ।। ୭ ।।





# ଶୋଭା ବଡ ସିଂହାର ବେଶ

*ଠାକୁର ଅଭିରାମ ପରମହଂସ*

ଶୋଭା ବଡ ସିଂହାର ବେଶ ହେ ରାଧାଈଶ....।୦।
ନୃତ୍ୟନ୍ତି ଦେବଦାସୀ ସଦା ଶଯ୍ୟା ତୁଳସୀ,
ପହୁଡିବେ କମଳା ବିଳାସ । ହେ ରାଧା....।୧।

ଖୁଣ୍ଟିଆ ଡାକ ଦେଲା ପହୁଡ ବେଳ ହେଲା
ଶ୍ରୀ ଅଙ୍ଗେ ଲାଗିଲା ଅଳସ । ହେ ରାଧା....।୨।

ତ୍ରେତିଶ କୋଟି ଦେବେ ଆସି ମିଳିଲେ ସର୍ବେ
କରିଲେ ଜୟ ଜୟ ଘୋଷ । ହେ ରାଧାଈଶ ।୩।

ଅଭିରାମ ଦିଏ ଡାକ ଉଠ ମୋ ହୃଦ ପଦକ
ବିଭବ ଜ୍ଞାନେ ହୋଇ ତୋଷ । ହେ ରାଧା....।୪।







# କୃପାକର ମହାବାହୁ

ଭୀମଭୋଇ

କୃପାକର ମହାବାହୁ
ଆଜ୍ଞାରେ କୋଟି ଜନ୍ମ ଦୁଃଖ ଯାଉ ...।୦।

ଜଗି ବସି କାଳ କରୁଛି ଦୁର୍ବଳ
ଯେସନେ ଖାତକ ସାହୁ
ସଂସାର ସାଗରେ ପଡ଼ି ନିରନ୍ତରେ
ବୁଦ୍ଧି ଦିଶୁନାହିଁ ଆଉ
ଘଟେ ଘଟେ ବାସ ଏ କଳି ପୁରୁଷ ତା'ର ବଡ଼ିମା କେ କହୁ ...।୧।

ମାୟା ଜାଲେ ପ୍ରାୟେ ଢାଙ୍କିଅଛି କାୟେ
ସତ୍ୟ ଧର୍ମ ଥାଉଁ ଥାଉଁ
ଏ ପିଣ୍ଡ ବ୍ରହ୍ମାଣ୍ଡ ହୋଇ ଖଣ୍ଡ ଖଣ୍ଡ
ଦମ୍ଭେ ରହୁ ନାହିଁ ଆଉ
ଦିବସ ରଜନୀ ପକାଉଛି ହାଣି ମାୟାକଛ କାଳ ରହୁ ...।୨।

ଜଣାଇଲି ଯେତେ ଶୁଣ ଶ୍ରୁତି ପଥେ
ଭକ୍ତ ବାନା ଯେବେ ବହୁ
ଏ କଳି ଯୁଗରେ ଉଦ୍ଧରି ନେବାରେ
କୃପାର ସାଗର ଯେହୁ
ଭଣେ ଭୀମ ହୀନ ପାମର ଅଜ୍ଞାନ
ଗୁରୁ ପାଦେ ଚିତ୍ତ ରହୁ...।୩।





# ଜଗନ୍ନାଥ ହେ

ବନମାଳୀ ଦାସ

ଜଗନ୍ନାଥ ହେ ...
କିଛି ମାଗୁନାହିଁ ମୁଁ ତୋତେ
ଧନ ମାଗୁନାହିଁ ଜନ ମାଗୁନାହିଁ
ମାଗୁଛି ଶରଧା ବାଲିରୁ ହାତେ ।। ଘୋଷା ।।

ଆନ ଦରଶନ ନ ଲୋଡ଼େ ନୟନ
ଏକା ତୋହ ଦେଖା ବିନା
ଶୁଣିବାକୁ କାନ ନ ଇଛଇ ଆନ
ତୋହ ଚରିତେ କାମନା ।। ୧ ।।

ରସନା ନ ବାଞ୍ଛେ ଗ୍ରାମ୍ୟଗୀତ ଗାଇ-
ବାକୁ ରଜନୀ ଦିବସ
ତୋହ ନାମାବଳୀ କେବଳ ଶଙ୍ଖାଳି
ହୋଇଥାଉ ପୀତବାସ ।। ୨ ।।

ନାସା ମୋର ତୃପ୍ତି ନ ଲଭଇ ଆନ
ସୁବାସ ଦ୍ରବ୍ୟ ଆଘ୍ରାଣେ
ତୋହ ଛଡ଼ା ମାଳ ତୁଳସୀ କୁସୁମ
ଚନ୍ଦନ କର୍ପୂର ଧ୍ୟାନେ ।। ୩ ।।

ମୋ ହସ୍ତ ଅଙ୍ଗୁଳି ରାମ ବନମାଳୀ
ହରେକୃଷ୍ଣ ଜପୁଥାଉ
ବୋଲେ ବନମାଳୀ ମୋ ବେନି ଚରଣ
ତୋ ତୀର୍ଥ ଭ୍ରମଣେ ଯାଉ ।। ୪ ।।







# କୃଷ୍ଣ କେଶବ ହରି

*ବନମାଳୀ ଦାସ*

କୃଷ୍ଣ କେଶବ ହରି
ମାଧବ ଦଇତାରି
କଞ୍ଜନୟନ ପ୍ରଭୁ କୁଞ୍ଜବିହାରି । ଘୋଷା ।

ଗୋବିନ୍ଦ ନନ୍ଦବାଳ ବସୁଦେବ ଦୁଲାଳ
ବରଜସୁତମେଳ ବକାଅରି
ଯଦୁକୁମୁଦଚନ୍ଦ୍ର ଜଗନ୍ନାଥ ଉପେନ୍ଦ୍ର
ସାରଙ୍ଗଧର ରସରାଜ ମୁରାରି ।୧।

ବାଳିଭ୍ରାତ-ମଇତ୍ର ମାଳୀ-ସୁଦାମା-ମୁକ୍ତ
ଦରନାଶନ ଦାବାନଳଆହାରୀ
ବିଷ୍ଣୁ ପରମାନନ୍ଦ ଆଦିକନ୍ଦ ସୁରେନ୍ଦ୍ର
ବ୍ରହ୍ମାଣ୍ଡନାଥ ବଳିଦ୍ୱାର-ଭିକାରୀ ।୨।

ଗୁଞ୍ଜାଗୁଞ୍ଜମାଳିଆ ଆମ୍ବଜାମୁଡ଼ାଳିଆ
କାଳିଦଳିଆ କୁଜସୁନ୍ଦରକାରୀ
କେଳିପୁଚ୍ଛଚୂଳିଆ ଧେନୁବୃନ୍ଦଚାଳିଆ
ନୀପମୂଳିଆ ବାଙ୍କ ମୁରଲୀଧାରୀ ।୩।

ସତ୍ୟସୁଖଦାୟକ ନିତ୍ୟସ୍ଥଳନାୟକ
ଘେନିମା ଚିତ୍ତେ ମୋର ଏହି ଗୁହାରି
ଭାବଇ ବନମାଳୀ ଏ ନାମ କଣ୍ଠେ ମାଳୀ
କରି ମୋ ଜୀବ ଯିବ ସତେ ବାହାରି ।୪।





# ଶ୍ରୀ ଦୁଃଖନାଶନ ଜଣାଣ

*ବନମାଳୀ ଦାସ*

ଦୁଃଖନାଶନ ହେ ! ସୁଖ ନ ପାଇଲି ଦିନେ
ବେଳୁଁ ବେଳ ଦୁଃଖ ପ୍ରବଳ ହେଉଛି
ବିଜୁଳି ଯେସନ ଘନେ ।ଘୋଷା।

ଅନାଥର ନାଥ ନୀଳଗିରିନାଥ
ଜଗନ୍ନାଥ ଲକ୍ଷ୍ମୀସାଇଁ
ଅରକ୍ଷିତକୁ ତ ରଖି ଦେଉନାହଁ
ଭବଜଳରେ ଭସାଇ ।୧।

ଆହେ ହରି! ମୁହିଁ ସହି ତ ନ ପାରି
ଅନ୍ତରବେଦନାମାନ
ଯେଣୁ କରି ତୁମ୍ଭେ ଦୟା ନ କଲ ହେ
ପ୍ରଭୁ ଆତଙ୍କନାଶନ ।୨।

ଏଡ଼େ ନିଷ୍ଠୁରତା ହେଲ ମୋହ ଭଜି
ଦୁଃଖୀ ଜନ ହୀନଠାରେ
ଦୀନ ଜନମାନେ ଗୁହାରି କରନ୍ତି
ନ ଶୁଣ କି ତୁମ୍ଭେ ବାରେ ।୩।

ପୋଡୁ ମୋ ଅଦୃଷ୍ଟ ଅନ୍ନ-ବସ୍ତ୍ର-କଷ୍ଟ
ଏଡ଼େ ବଡ଼ ପ୍ରଭୁ ଥାଉ
ବନମାଳୀ ବୋଲେ ଚଞ୍ଚଳ ମନ ମୋ
ପଦ୍ମପାଦେ ତୁମ୍ଭ ରହୁ ।୪।







# ଆହେ ପ୍ରଭୁ କଳାଶ୍ରୀମୁଖ !

*ବନମାଳୀ ଦାସ*

ଆହେ ପ୍ରଭୁ କଳାଶ୍ରୀମୁଖ !
କାଳେ କାଳେ ମୋର ନ ଗଲା ଦୁଃଖ । ଘୋଷା ।

କି ଅବା ଛାମୁରେ ଜଣାଇବି ମୁହିଁ
ସାକ୍ଷାତେ ମୋ ଦୀନ ଅବସ୍ଥା ଦେଖ
ତେଣୁ ଶ୍ରୀ ଛାମୁକୁ ଯାଇ ନପାରଇ
ଖଣ୍ଡିଏତ ମୋର ନଥାଇ ଭେକ । ୧ ।

ସାଉଙ୍କ ଜଞ୍ଜାଳ କୁଟୁମ୍ବଙ୍କ ଗୋଳ
ଅନ୍ତର ବେଦନା ସବୁ ଅଧିକ
କା ଆଗେ କହିବି କେ କଷ୍ଟ ଫେଡିବ
ସଂସାରେ ମୋ ସରି ନାହିଁ ନିରେଖ । ୨ ।

ମନ ମଧ୍ୟେ ମୋର ହରଷ ନଥାଇ
ହୃଦୟ ମଧରେ ସଦା ବିମୁଖ
ଚଉବର୍ଗଦାନୀ ଆଶ୍ରେ କରି ମୁଁ ଯେ
କାହିଁରେ ଆଉ ନ ପାଇଲି ସୁଖ । ୩ ।

ବାତଚକ୍ର ପ୍ରାୟେ ମନ ଭ୍ରମୁଥାଇ
ଦଣ୍ଡେ ନ ରହଇ ତୁମ୍ଭର ପାଖ
କହେ ବନମାଳୀ ଶଙ୍ଖରେ ପୂରାଇ
ଚକ୍ର ଉହାଡିଣ ଘୋଡାଇ ରଖ । ୪ ।





# ଦୀନବନ୍ଧୁ ଦଇତାରୀ

*ବନମାଳୀ ଦାସ*

ଦୀନବନ୍ଧୁ ଦଇତାରୀ
ଦୁଃଖ ନ ଗଲା ମୋହରି
ହେଲ କି ନିଷ୍ଠୁର ଚିତ୍ତ ନୀଳାଚଳେ ବିଜେ କରି ।। ଘୋଷା ।।

ଲକ୍ଷ ଯୋଜନରେ ଗଜ ଡାକିଲା ହେ ଦେବରାଜ
ତା' ଡାକକୁ ଚତୁର୍ଭୁଜ ! ଶୁଣିଛ ଶ୍ରବଣ ଡେରି ।। ୧ ।।

କୁରୁପତି ସଭାତଳେ ଦ୍ରୌପଦୀ–ଆତଙ୍ଗ କାଳେ
କୋଟି ବସ୍ତ୍ର ଦେଇ ହେଲେ ଲଜ୍ଜାରୁ କରିଛ ପାରି ।। ୨ ।।

ବଳବନ୍ତ ପ୍ରଭୁ ବୋଲି ବଳେ ମୁଁ ଯେ ଆଶ୍ରା କଲି
ଦେଖୁ ଦେଖୁ ଭାସିଗଲି କେ ଏଥୁ କରିବ ପାରି ।। ୩ ।।

ରଖ ବା ନରଖ ମୋତେ ଶରଣ ତୋ ପାଦଗତେ
କହେ ବନମାଳୀ ଗୀତେ ବସିଅଛି ଧ୍ୟାନ କରି ।। ୪ ।।







# ଦୟାକର ଦୀନବନ୍ଧୁ

*ରାମକୃଷ୍ଣ ପଟ୍ଟନାୟକ କବିଚନ୍ଦ୍ର*

ଦୟାକର ଦୀନବନ୍ଧୁ ! ଶୁଭେ ଯାଉ ଆଜ ଦିନ
କର ଯୋଡ଼ି ତୁମ୍ଭ ପଦେ କରୁଅଛି ନିବେଦନ । ।ଘୋଷା।

ଅନାଦି ଅନନ୍ତ ହରି କ୍ଷୀରସାଗରବିହାରି !
ଲକ୍ଷ୍ମୀଦେବୀ ମନୋହାରୀ ପ୍ରଭୁ ପତିତପାବନ ।୧।

ସଚ୍ଛଶାନ୍ତି ପ୍ରଦାୟକ ଦୁଷ୍ଟଶାସ୍ତି ବିଧାୟକ
ରୁକ୍ମିଣୀ ପ୍ରାଣନାୟକ ଜଗତ-ଜନ-ବନ୍ଦନ ।୨।

ଜଗଜ୍ଜନହିତକାରୀ ଦଶଅବତାରଧାରୀ
ମଧୁସୂଦନ ମୁରାରି କାଳୀୟଦର୍ପଗଞ୍ଜନ ।୩।

ଯେଣେ ଚକ୍ଷୁ ପଡ଼େ ନାହିଁ ତୁମ୍ଭ କୀର୍ତ୍ତି ବିରାଜଇ
ଭାବି ଚିତ୍ତ ପୁଲକଇ ହେ ଭକ୍ତହୃଦଚନ୍ଦନ ।୪।

ତୁମ୍ଭେ ଧ୍ୟାନ ତୁମ୍ଭେ ଜ୍ଞାନ ମୁକ୍ତିଦାତା ଭଗବାନ
ତୁମ୍ଭ ବିନୁ ନାହିଁ ଆନ କଳି କଳୁଷନାଶନ ।୫।

ତୁମ୍ଭେ ଏ ସଂସାରେ ସାର ଆଉ ସବୁ ମାୟା ଘୋର
କୃତାନ୍ତଭୟୁଁ ଉଦ୍ଧର କହେ ରାମକୃଷ୍ଣ ଦୀନ ।୬।





# ପତିତ ଜନଙ୍କୁ

ନିତ୍ୟାନନ୍ଦ ଦାସ

ପତିତ ଜନଙ୍କୁ ଉଦ୍ଧାରିବା ପାଇଁ
ଉଡ଼ାଉଅଛ ପତାକା
ବାହୁ ଟେକି ତୁମ୍ଭେ ବସି ଚାହୁଁ ଚାହୁଁ
ବିପତ୍ତି କରୁଛ ଡକା
ମହାପ୍ରଭୁ ହେ ।। ୦ ।।
ନାଶଗଲେ ତୁମ୍ଭେ ପରେ କି କରିବ
କରୁଣା ଭଣ୍ଡାର ଫେଇ
ଦୁଃଖୀ ଗଲେ ନାଶ ଅର୍ଜିବ କି ଯଶ
ପଛେ ଚଉବର୍ଗ ଦେଇ
ମହାପ୍ରଭୁ ହେ ।। ୦୦ ।।
ଘୋର ନବଘନ ଥାଉଁ ଯେବେ ଦୀନ
ଚାତକ ଜୀବନ ହରାଇବ
ସମୁଦ୍ରେ ବରଷି ଘୋର ଜଳରାଶି
ଚାତକ ବନ୍ଧୁ କି ବୋଲାଇବ ।। ୧ ।।
ମାଳତୀ-ବକୁଳ-ବିକଚ-କମଳ
ବନ ଥିବ ଅଳି ଯିବେ ମରି
ପୂର୍ଣ୍ଣ ସୁଧାକର ଅନାଇଁ ଚକୋର-
ମାଳିକା ଯେବେ ମରିବେ ଝୁରି ।। ୨ ।।
କଳ୍ପଲତା ତଳେ ଥାଇ ଯେ ମୁଁ ଫଳେ
ନିରାଶ ହୋଇବା କେଡ଼େ ଲାଜ
ରତ୍ନାକର ହୋଇ ରତ୍ନରଙ୍କ ଯହିଁ
ଏ କଥା କେମନ୍ତେ ଦେବରାଜ ।। ୩ ।।




ଥାଉଁ ଗଙ୍ଗାକୂଳେ ପରାଣ ବିକଳେ
ତୃଷାରେ ଯେବେ ହରିବ ପ୍ରାଣ
ଦିନ ମଣି ଥିବ ଅନ୍ଧାର ହୋଇବ
ଏ କଥା ପ୍ରଭୁ ମନକୁ ଆଣ ।। ୪ ।।
ସାମନ୍ତ ଯେ ଚତୁର୍ବର୍ଗ ଅଧିକାରୀ
ଲକ୍ଷ୍ମୀ ପରିଚାରୀ ଥିବେ ହୋଇ
ଏମନ୍ତ ସାମନ୍ତେ ଆଶା କରି ଭୃତ୍ୟ
ଭିକ୍ଷା ମାଗୁଥିବ ଦୁଃଖ ପାଇ ।। ୫ ।।
ଏଥୁ ଅଧିକ କି ଅଛି ଲୋକହସା
ଆଉ କି ରହିଲା ପ୍ରଭୁ ଆଣି
ଝମକିଲା ସିଂହ ପ୍ରାୟ ଝମକିବା
ବିଅର୍ଥ ଧାରିବା ଚକ୍ର ପାଣି ।। ୬ ।।
ଦୀନବନ୍ଧୁ ବୋଲି ନାମ ଯେ ବହିଛ
ଏହା ନ ଚେତକି ଭାବଗ୍ରାହୀ
ଏବେ ଏ ନାମ ଏଣିକି ନ ବହିବ
ଚକ୍ର ପରୁ ନେତ ଥୁଅ ନେଇ ।। ୭ ।।
ତେବେ ତୁମ୍ଭଙ୍କୁ କେ କାହିଁକି କହିବ
କର୍ମ ଆଦରି ସହିବ ଦୁଃଖ
ନିରାଶ ଜଳଧି ତୁମ ନାମ ସିନ୍ଧି
ଜଗତରେ ବାଜିଯିବ ଡାକ ।। ୮ ।।
ଆଉ ଭୁବନରେ ଠାକୁର ଖୋଜିବା
ତୁମ୍ଭ ପରି କେହି ଥିଲେ ଜଣେ
ଦୁଃଖି ଲୋକଙ୍କର ଦୁଃଖ ହରୁଥିବେ
କୃପା ବିଲୋକନ ନେତ୍ରକୋଣେ ।। ୯ ।।
ସୁଦର୍ଶନ ନାମେ ଚକ୍ର ବହିଥିବେ
ଟେକି ବାହୁରେ ଦକ୍ଷିଣ କରେ
କହେ ନିତ୍ୟାନନ୍ଦ ଅପରାଧୀ ମନ୍ଦ
ମୋହର ଶରଣ ତାଙ୍କଠାରେ ।। ୧୦ ।।





# ନୀଳଚକ୍ରେ ହୋ ଦେଖ ଉଡୁଛି ବାନା

*ଗୌରଚରଣ ଅଧିକାରୀ*



ନୀଳଚକ୍ରେ ହୋ, ଦେଖ ଉଡୁଛି ବାନା
ପତିତ ପାବନ ନାମଟି ଯା' ନାଁ ।। ଘୋଷା ।।
ଆସ ଆସ ବୋଲି ପାତକୀମାନଙ୍କୁ
ଡାକୁଅଛି ପରା ସଂଗାତ ! ଅନା
ନେତ ଧ୍ୱଜାବର ଉଡ଼ି ଫର ଫର
ଉଡ଼ାଇ ଦେଉଛି ଭବ ଯାତନା ।। ୧ ।।
ପଞ୍ଚକୋଶୀଯାଏ ଜନେ ଦେଖାଯାଏ
ଦର୍ଶନେ କଲ୍ମଷ ହୁଅଇ ଚୂନା
ଚଉଦ ବ୍ରହ୍ମାଣ୍ଡ କର ତାଙ୍କ ଲୀଳା
ଶଙ୍ଖନାଭି କ୍ଷେତ୍ରେ ବିଚିତ୍ର ସିନା ।। ୨ ।।
ସଳଖ ସୁନ୍ଦର ବଡ଼ଦାଣ୍ଡ ଶୋଭା
ମର୍ତ୍ତ୍ୟମଣ୍ଡଳରେ କାହିଁ ଅଛି ନା
ଶରଧା ବାଲିରୁ ସ୍ୱର୍ଗଦ୍ୱାର ଯାଏଁ
ଗହଳ ଚହଳ ନୁହେଁ କଳନା ।। ୩ ।।
ପାପ ଛଡ଼ାପୁରେ ବାସ କରିବାକୁ
ଯାହାକୁ ତାହାକୁ ନୁହଇ ମନା
ଆଚାଣ୍ଡାଳ ବିପ୍ର ପତ୍ରକେ ଭୁଂଜିବା
ବଡ଼ ଆଚମ୍ଭିତ ଲାଗଇ କିନା ।। ୪ ।।
ଗୌର ଦ୍ୱିଜ ଭଣି ଶ୍ରୀକ୍ଷେତ୍ର ରହଣି
ପାଇଁ କରୁଥାଇ ସଦା ଭାବନା
ସତେ ହେବେ ସାହା ବଳିଆର ବାହା
ସଂପୂର୍ଣ୍ଣ କରିବି ମନ କାମନା ।। ୫ ।।









# ମହାବାହୁ ! ଅଖିଳ ଜଗତ ନାଥ

ଗୌର ଚରଣ

ମହାବାହୁ ! ଅଖିଳ ଜଗତ ନାଥ
ତୁମ୍ଭେ ଥାଉ ଥାଉ କାହା ପାଦତଳେ ଲୋଟାଇବି ମୋର ମାଥ ।

ମହାବାହୁ ! ଲାଜମାଡ଼େ ଏଥିପାଇଁ
ଇତରମାନଙ୍କୁ ହାତ ମଳିବି କି ତୁମ୍ଭଙ୍କୁ ଛାଡ଼ି ଗୋସାଇଁ ।

ମହାବାହୁ ! ଭଲେ ଅବଧାନ କର
ତୁମ୍ଭ ବାହାରେ କେ ବଡ଼ ଜଣେ ଅଛି ତା ଆଗେ ଯୋଡ଼ିବି କର ।

ମହାବାହୁ ! ତୁମ୍ଭେ ତ ବିଚିତ୍ର କର୍ମା
ଆଉ ମୁଁ ସଂସାରେ କାହାକୁ କିପାଇଁ ବୋଲିବି ବାବୁ ମଣିମା ।

ମହାବାହୁ ! ମୋତେ ମାଗି ଆସେ ନାହିଁ
ତୁମ୍ଭ କୃପା ଭିକ୍ଷା ବିନୁ କାହା ଦ୍ୱାରେ ଯାଚକ ହୋଇବି ଯାଇ ।

ମହାବାହୁ ! ଏ ଜୀବନ ଗଲେ ଯାଉ
ଗଉର ଚରଣ ପଦ ଶ୍ରୀଚରଣେ ଛାୟାକୁ ଡକାଇ ଥାଉ ।





# ଦୁଃଖନାଶନ

*ଗୌରଚରଣ ଅଧିକାରୀ*

ଦୁଃଖନାଶନ ଗରୁଡ଼ାସନ ହରି !

ଦୁଃଖ ଜଣାଇବି କାହାକୁ

ଦୀନନାଥ ଥାଉଁ ଅନ୍ଧାର ଘୋଟୁଛି

ଏ ନିନ୍ଦାଟି ଚଉବାହାକୁ ।। ଘୋଷା ।।

ଚିନ୍ତା–ନାବ ପରେ ବସାଇ କରି

ଠେଲି ଦେଲ ଯେଣୁ ଯାଉଛି ସରି

ରଖ ରଖ ବୋଲି କାହାକୁ ଡାକିବି

ଶ୍ରବଣତ କଲ ଲୁହାକୁ ।। ୧ ।।

ସୁଦାମା–ଦାରିଦ୍ର୍ୟ ଭଞ୍ଜନ କାରି

ରଖିଛ ପାଣ୍ଡବେ କୁରୁ ସଂହାରି

ଜଳର ମଧ୍ୟରେ ଗଜକୁ ରଖିଲ

ଛେଦି ପକାଇଲେ ଗ୍ରାହାକୁ ।। ୨ ।।

ଅଜାମିଳ ନାମେ ଯେ ମହାପାପୀ

ତରିଗଲା ପୁତ୍ର ନାମକୁ ଜପି

ନାତେକ ମାରିଲା ଶ୍ରୀବତ୍ସ ବ୍ରାହ୍ମଣ

ହୃଦରେ ବହିଲ ତାହାକୁ ।। ୩ ।।





ବନର ହରିଣୀ ଚିନ୍ତିବା ମାତ୍ରେ
ଘନେ କୃପା କଲ ପରା ସାକ୍ଷାତେ
ଅର୍ଷିତ ଡାକକୁ ନ ଶୁଣୁଛ ଲଜ୍ଜା
ନୋହିବ କି ଲକ୍ଷ୍ମୀ ନାହାକୁ ।। ୪ ।।

ଯେଉଁ ନାମ ଧରି ପବନ ସୁତ
ଡେଇଁ ସମୁଦ୍ର ଆଣିଲା ସଂକେତ
ଗଉର ଚରଣ ସେ ପାଦେ ଶରଣ
ହର ବ୍ରହ୍ମା ଚିନ୍ତେ ଯାହାକୁ ।। ୫ ।।





# ରାଧେ ଗୋବିନ୍ଦ ଭଜ

*ଗୌରଚରଣ ଅଧିକାରୀ*

ରାଧେ ଗୋବିନ୍ଦ ଭଜ ରାଧେ ଗୋବିନ୍ଦ ଭଜ
ନନ୍ଦନନ୍ଦନ ବଂଶୀବଦନ ବୃନ୍ଦାବନଚନ୍ଦ୍ର ଭଜ । । ଘୋଷା ।

ମାୟା ମୋହ ହିଂସା କାମ କ୍ରୋଧ ଲୋଭ
ଏହାଙ୍କ ସଙ୍ଗରେ କିପାଇଁ ମଜ
ହରେ ରାମ କୃଷ୍ଣ ଅମୃତ ସାଗର
ସାଧୁଜନ ପାଶେ ପଚାରି ବୁଝ ।୧।

କେଶବ କଂସାରି ରାମ ଦୈତାରି
କଂସନାଶି କଲେ କୁବୁଜା ଭଜ
କୃଷ୍ଣ ନାରାୟଣ ନୃସିଂହ ବାମନ
ବଳିଶିରେ ଦେଲେ ଯେ ପାଦରଜ ।୨।

ଦୟଣାଭୂଷଣ ନାଶିବେ କଷଣ
ଦୃଢ଼େ ଭଜୁଥିବୁ ପାଦସରୋଜ
ଶ୍ରୀ ବୃନ୍ଦାବନରେ ନାନାରଙ୍ଗେ କେଳି
ଗୋପସୁତ ସଙ୍ଗେ ବରଜରାଜ ।୩।

ହରିଣୀବିପତ୍ତି ହରିଲେ ଶ୍ରୀପତି
ଗ୍ରାହା ମାରି ତାରି ରଖିଲେ ଗଜ
ଏବେ ନୀଳାଚଳେ ରହି ଜଗନ୍ନାଥେ
ଭକ୍ତ ପାଇଁ ଟେକି ଅଛନ୍ତି ଭୁଜ ।୪।

ଅଚ୍ୟୁତ ମୁକୁନ୍ଦ ମାଧବ ମୁରାରି
ପତିତପାବନ ଗରୁଡ଼ଧ୍ୱଜ





ପ୍ରହ୍ଲାଦଛଳେ ସ୍ତମ୍ଭରୁ ବାହାରି
ନଖେ ବିଦାରିଲେ ହରିଣ୍ୟରାଜ ।୫।

ନରୋତ୍ତମ ନରହରି ହରେକୃଷ୍ଣ
ଭଜ ତୁ ଅଭୟ ପାଦପଙ୍କଜ
ଯେଉଁ ପାଦପଦ୍ମେ କାଳିକି ଦଳିଲେ
ହୋଇଣ ମଦନମୋହନ ସଜ ।୬।

ଇନ୍ଦ୍ର ବିବାଦରେ ମନ୍ଦର ଧଇଲେ
ହାରି ସୁରପତି ପାଇଲା ଲାଜ
ଗଉରଚରଣ ଶରଣ ମାଗଇ
କାରଣ କରିବେ ଦେବାଧିରାଜ ।୭।





# କାଳିଆ କାହ୍ନୁ ! ଆଉ ବିଳମ୍ବ କର କାହିଁକି ?

ଗୌରଚରଣ ଅଧିକାରୀ

କାଳିଆ କାହ୍ନୁ ! ଆଉ ବିଳମ୍ବ କର କାହିଁକି ?
ବରଷକେ ଥରେ ବିଜୟ ରଥରେ
ପତିତ ତାରିବା ପାଇଁକି ।ଘୋଷା।

ଚଉଦ ବ୍ରହ୍ମାଣ୍ଡ ରୁଣ୍ଡ ହୋଇଛନ୍ତି
ଦର୍ଶନ କରିବା ପାଇଁକି
ଅନେକ କାଳର ଦୁଃଖ ଉପେକ୍ଷିବେ
କଳାଶ୍ରୀମୁଖକୁ ଚାହିଁକି ।୧।

ଆଗେ ଗଜପତି ଉଭା ହୋଇଛନ୍ତି
ଶିରେ ଯୋଡ଼ି କର ଦୁଇକି
ସୁନା ଶୋଧନୀରେ ମାର୍ଜନା କରନ୍ତି
ପହଣ୍ଡି ବିଜେୟେ ଭୂଇଁକି ।୨।

ଛତିଶାନିଯୋଗେ ଉଭା ହୋଇଛନ୍ତି
ଯେ ଭାଜନ ହେବେ ଯହିଁକି
ଆକାଶେ ଇନ୍ଦ୍ର ଅମରବୃନ୍ଦ ପୁଷ୍ପ
ବୃଷ୍ଟି କରୁଛନ୍ତି ତହିଁକି ।୩।

ତାଳଧ୍ୱଜ ରଥେ ବିଜୟେ କରନ୍ତୁ
କହି ଦିଅ ବଡ଼ଭାଇକି





ଦେବୀରଥ ବଡ଼ ସୁନ୍ଦର ଦିଶିବଭଉଣୀ
ହଳଦୀମୁହାଁକି ।୪।

ତୁମ୍ଭେ ପଛରେ ପଛକେ ଆସୁଥାଅ
କରି ନବରଙ୍ଗଛଇକି
ମଥା ଦୋହଲାଇ ଚାହିଁଆ ହଲାଇ
ଠାବେ ଠାବେ ରହି ରହିକି ।୫।

ସେବକମାନଙ୍କ ଅଙ୍ଗ ଶ୍ରମଝାଳ
ଗମ ଗମ ପଡ଼େ ବହି କି
ଝଙ୍କା ଝଙ୍କି କରିବାରୁ ବାଧୁଥିବ
ପରା ସୁକୁମାରଦେହିକି ।୬।

ଦେବଦାସୀ ନାଚ ଉକୁଟ କରନ୍ତି
ତା ତା ଧ୍ରିମିକଟ ଥେଇକି
ବାଜେ ଖୋଳ ତାଳ ମହୁରୀ ମଞ୍ଜୁଳ
ମର୍ଦ୍ଦଳ ତା ଧେଇ ଧେଇକି ।୭।

କା ନେତ୍ରୁ ଲୋତକ ବହେ ଥକ ଥକ
କେହି ନାଚେ ଗୀତ ଗାଇକି
ଜଗମୋହନିଆ ଜଗତଜନକୁ
ଲଗାଇଛି ପ୍ରେମ ବାଇକି ।୮।

କେତେ ଖାଇବ କଦଳୀ କରମଙ୍ଗା
ସରପୁଳୀ ଖଣ୍ଡଖଇକି
ନାଡ଼ି ବଡ଼ି ଗଜା ମନୋହର ଖଜା
ଛେନାପୁର ବସାଦହିକି ।୯।

କେ କେତେ ଢ଼ମାଳୀ ଗୀତ ଶୁଣାଇବେ
କେ କେତେ କରିବେ ଟାହିକି



ଖଣ୍ଡି ଚିରଦୁଃଖ ମଣ୍ଡି ଦେବ ଆଜ
କ୍ଷେତ୍ର ବଡ଼ଦାଣ୍ଡ ସାହିକି ।୧୦।

ନ'ଦିନ ଅବଧି ଲକ୍ଷ୍ମୀଙ୍କି ପ୍ରବୋଧି
ଆସିଅଛ ପରା କହିକି
ତୁନୀହୋଇ ଆସ ଚିହ୍ନି ଅଛଟିକି
ଜଜପତି ଜେମାଦେଈକି ।୧୧।

ଆହେ ଚକାଡ଼ୋଳା ! ବୃନ୍ଦାବନଲୀଳା
ମନେ ଆଉ ପଡୁନାହିଁ କି
ଆସ ବଂଶୀଧରା ! ଚରାଇବ ପରା
ଜଗତ-ଭଗତ-ଗାଈଙ୍କି ।୧୨।

ପାପ-ଅନ୍ଧକାର ଛାର କି କରିବ
ଆଉ ସେ ପାରିବ ଛୁଇଁକି ?
ନୀଳଶଇଳ ଶିଖରି ପୂର୍ଣ୍ଣଚନ୍ଦ୍ର
ଆସୁଛନ୍ତି ପରା ଉଇଁ କି ।୧୩।

ଅପଲକ ଦୃଷ୍ଟି କରରେ ମାନସ !
ଆଉ ଏ ସମୟ ପାଇକି ?
ଗଉରଚରଣ ପଶିଲା ଶରଣ
ନନ୍ଦିଘୋଷ ରଥ ଛାଇକି ।୧୪।







# ଚକାନୟନକୁ ପତିତ କେହି

ଚନ୍ଦନ ହଜୁରୀ

ଚକାନୟନକୁ ପତିତ କେହି
ଚକାଇ ଖର ନିଃଶ୍ୱାସ ପକାଇ
ଡକା ପକାଇ ଗରୁଡ଼ ପଛରେ
ବକାରି ! ମୋ' ଆର୍ତ୍ତ ଶୁଣ ସତ୍ୱରେ ହେ
ଡଙ୍କା ବାଜୁଛି ମହିମା ହେ
ଠକାର କରି କର୍ଣ୍ଣେ ଗିର ନଶୁଣ
କାହିଁକି ବିଚିତ୍ର କର୍ମା ହେ । ୧ ।

କରୀ-ହରିଣୀ ଦ୍ରୌପଦୀ-ବିପତ୍ତି
ହରି ! ହରିଛ ପରା ଡେରି ଶ୍ରୁତି
ଦରିଦ୍ର ସୁଦାମାକୁ କୋଟିନିଧି
ପରିପୂର୍ଣ୍ଣେ ଦେଲେ କୃପାବାରିଧି ହେ
ଧରିଯା ମହିମା ଚିତ୍ତେ ହେ
ସରି ତ ଯାଉଛି ହରି ! ଆଉ ଥରେ
ନ ଚାହିଁଲ କୃପା ନେତ୍ରେ ହେ । ୨ ।

ଅଜାନୁବାହୁ ! ମୁଁ ପତିତ ଜଣେ
ଅଜାମିଳୁଁ ବଳି ସହସ୍ର ଗୁଣେ
ଲଜ୍ଜା ହରି ନ ତାରିଲେ ନିକର
ଧ୍ୱଜା ଚକ୍ରରୁ ବନ୍ଧନ ଉତ୍ତାର ହେ
ମଜାରେ ମୁଁ ଏହା ଭାବେ ହେ



ବଜାଇ ଜୟ ଆର୍ତ୍ତତ୍ରାଣ ଡିଣ୍ଡିମ
ହଜାଇ ଦେଉଛି ଏବେ ହେ । ୩ ।

ଧଣ୍ଡାମାଳ ବୁହା ! ଦୁର୍ଦ୍ଦଶା ରାହୁ
ଚଣ୍ଡାଳ ଗ୍ରାସୁଅଛି ଚାହୁଁ ଚାହୁଁ
ଭଣ୍ଡାରେ ଖଣ୍ଡା ନାହିଁକି ମଣିମା ।
ଗଣ୍ଡାକର ଦିଶୁନାହିଁ ମହିମା ହେ
ହଣ୍ଡା ମୋ' ଯାଉଛି ଫାଟି ହେ
ଥଣ୍ଡା କରି କୃପା ଜଳ ବୃଷ୍ଟି କର
ମୋ' ଚିତ୍ତ-ଚାତକ ପାଟି ହେ । ୪ ।

ମନ୍ଦରଧର ନୀଳଗିରିବାସୀ ।
କନ୍ଦରବାସୀ ପ୍ରାୟେ ଅଛ ବସି
ପନ୍ଦର ନେତ୍ର ଧାତା ପୁରନ୍ଦର
ବନ୍ଦନ କରନ୍ତି ଯେଉଁ ପୟର ହେ
ଛନ୍ଦ ଛାଡ଼ ଦେବରାଜେ ହେ !
ନନ୍ଦନନ୍ଦନ ଶ୍ରୀ ଚରଣାର ବିନ୍ଦେ
ଚନ୍ଦନ ହଜୁରୀ ଭଜେ ହେ । ୫ ।







# ଭଜମନ ଜଗନ୍ନାଥଙ୍କୁ

*ଚଣ୍ଡୀ ଦାସ*

ଭଜମନ ଜଗନ୍ନାଥଙ୍କୁ
ନୀଳାଚଳ ବାସୀ ଦାରୁ ବ୍ରହ୍ମଙ୍କୁ ।। ଘୋଷା ।।

ଭଜିଣ ଭୂଷଣ ହୋଇଲା ଅମର
ଧାୟନ୍ତି ବରୁଣ କୁବେର ଯା'କୁ
ସ୍ୱର୍ଗେ ଶଚୀପତି ଯା' ପାଦକୁ ଚିନ୍ତି
ବାସୁକୀ ଧ୍ୟାଉଛି ପଦ୍ମପାଦକୁ ।। ୧ ।।

ବେଦବ୍ୟାସ ଆଦି ଶୁକ ସନକାଦି
ଧ୍ୟାଉଛନ୍ତି ହୃଦେ ଯା'ହା ନାମକୁ
ବ୍ରହ୍ମାବେଦବର ଭାବଇ ପୟର
ପଞ୍ଚାନନ ଭାବୁଛନ୍ତି ଯାହାକୁ ।। ୨ ।।

ଚନ୍ଦ୍ର ଦିବାକର ଅଷ୍ଟଦିଗ ପାଳ
ଧ୍ୟାଉଛନ୍ତି ହୃଦେ ଯାହା ପାଦକୁ
ସ୍ୱର୍ଗ ମର୍ତ୍ତ୍ୟ ଆଦି ପାତାଳ ବୈକୁଣ୍ଠ
ରହିଅଛି ଯାହା ଆଜ୍ଞା ପଦକୁ ।। ୩ ।।

ଯେଉଁ ନାମ ସୁଧା ଧ୍ୟାଇଣ ବସୁଧା
ରଖିଅଛି ସେହି ସତ୍ୟ ପଦକୁ
ସେ ସତ୍ୟକୁ ଡର ଚନ୍ଦ୍ର ଦିବାକର
ଚଳାଚଳ ସେହୁ ରାତ୍ର ଦିନକୁ ।। ୪ ।।



ଗଙ୍ଗା ଯା' ପୟର ଭାବି ନିରନ୍ତର
ଚଞ୍ଚଳା ଧାଉଛି ଯା'ର ରୂପକୁ
ସେ ରୂପ ଦର୍ଶନ କରୁଅଛି ଧ୍ୟାନ
ବାକ୍ୟ ଦେବୀ ଭଣେ ଯା'ର ନାମକୁ ।। ୫ ।।

ଯେଉଁ ପାଦ ପଦ୍ମ ଭାବୁଛନ୍ତି ସାଧୁ
ଭ୍ରମୁଛନ୍ତି ସେ ସାଧନା ଦ୍ୱାରକୁ
ସେ ଦ୍ୱାରକା ନାଥ ଭାବେ ଚଣ୍ଡୀଦାସ
ନିତ୍ୟେ ପ୍ରଣମଇ ବ୍ରଜପୁରକୁ ।। ୬ ।।







# ମନହରି ନଭଜୁ କାହିଁ ପାଇଁଟି

**ଚଣ୍ଡୀଦାସ**

ମନହରି ନଭଜୁ କାହିଁ ପାଇଁଟି
ଦିନେ ବାନ୍ଧିନେବ ଜନ୍ତୁ ସାଇଁଟି....।୦।

ଧନ ଦାରା ସୁତ ସବୁ ମିଛଟି,
ଗଲାବେଳେ କାନ୍ଦୁଥିବେ ଶୋକ କରିଟି
ଛଅ ଖଣ୍ଡ କାଠ ପରେ ଶୁଆଇବେ ତହିଁରେ,
ଘେନିଣ ଯିବେ ପାଞ୍ଚ ସାତଟି...।୧।

ଯେତେବେଳେ ଘରୁ ତୋତେ ଘେନି ଯିବେଟି,
ଗୋମୟ ଗୋଳି ପଛେ ସିଞ୍ଚୁଥିବେ ଟି
ସମଶାନକୁ ନେଇ ଜୁଇ ଦେବେ ଲଗାଇ,
ମୁଖରେ ତୋର ଅଗ୍ନି ଦେବେଟି...।୨।

ଖୁଞ୍ଚା ଡ଼ାଙ୍ଗ ଘେନି ତୋତେ ଖେଞ୍ଚୁଥିବେଟି,
ଭଡ ଭଡ ଡାକୁଥିବ ଗଣ୍ଠି ହାଡଟି
ଅଗ୍ନି ମାଂସକୁ ଖାଇ, ଶବ ଯିବ ମିଳାଇ,
କବଜା ଖଣ୍ଡି ଚଣ୍ଡୀ ପାଇଁଟି...।୩।

ସ୍ନାହାଣ କରିଣ ଶୁଚିମନ୍ତ ହୋଇଟି,
ଘରକୁ ଆସି ନିର୍ମାଲ୍ୟ ସେ ଖାଇଟି
ଶୀତଳ ଜଳ ଖାଇ, ମାଲେ ଯିବେ ପକାଇ,
ବନ୍ଧୁ କୁଟୁମ୍ବ ଭାବୁଥିବେଟି...।୪।

ବାରଦିନ କ୍ରିୟାକର୍ମ ସବୁ ସାରିଟି,
ଯେ ଯାହା ଘରକୁ ଯିବେ ବିଦା ହୋଇଟି
ଚଣ୍ଡୀ ଦାସ କହଇ, ହରି ଭଜରେ ଭାଇ,
ନାହିଁ ତା ବିନା ଅନ୍ୟ ଗତିଟି ... ।୫।





# ଆହେ ଶ୍ରୀରଙ୍ଗା ପୟର

**ଗୋପାଳକୃଷ୍ଣ**

ଆହେ ଶ୍ରୀରଙ୍ଗା ପୟର
ଏ ସଂସାର ସାର ମୁରଲୀଧର ହେ
ଈଶ କୋଟି ଜଗତର ।୦।

ଯେ ପଦ ସରୋଜ ରଜ ଲଭିବାକୁ
ବ୍ରହ୍ମାହର ନିରନ୍ତର
ମାଗୁଛନ୍ତି କର ପ୍ରସାରି ବିନୟେ
କୃପା ଭିକ୍ଷୁ ପରକାର ।୧।

ଶ୍ରୀରଙ୍ଗା ଚରଣ ସେବା ଖଟିବାକୁ
କମଳା ସଦା ତତପର
ବୀଣା ତେଜି ବାଣୀ ପରିଚାରୀ ରୂପେ
ଚାପନ୍ତି ଯା'ର ପୟର ।୨।

କୋଟି କୋଟି ରାଧା ଇଚ୍ଛିବେ ପ୍ରଭୁ ହେ
ସେବିବାକୁ ଶ୍ରୀ ପୟର
ଏ ଛାର କଥାକୁ ଅଧୀର ହୋଇଣ
ଗଡା ନାହିଁ ଅଶ୍ରୁଧାର ।୩।

ମୋ ରାଣ ମାଧବ ଚିନ୍ତାକର ତ୍ୟାଗ
ଆସ ମୋ ତୁଲେ ନିକର
ଆଜି ଭେଟାଇବି ବିନୋଦିନୀ ରାଇ
ଗୋପାଳକୃଷ୍ଣ ବିଚାର ।୪।







# ଜୟ ଜୟ ଜଗନ୍ନାଥ

ବିକ୍ରମ ନରେନ୍ଦ୍ର

ଜୟ ଜୟ ଜଗନ୍ନାଥ ଜୟ ଲକ୍ଷ୍ମୀପତି
କ୍ଷୀର ସିନ୍ଧୁ ମଧରେ ସର୍ବଦା ଯା'ର ସ୍ଥିତି ।। ୧ ।।

ଅନନ୍ତ ଅଙ୍କରେ ସଦା ଯାହାର ଶୟନ
ଶଙ୍ଖ ଚକ୍ର ଗଦା ପଦ୍ମ ଶ୍ରୀକରେ ଶୋଭନ ।। ୨ ।।

କୋଟି କୋଟି ବ୍ରହ୍ମାଣ୍ଡ ଯା' ଲୋମ ମୂଳେ ଅଛି
ଯେ ପ୍ରଭୁ ବିଚିତ୍ର ଲୀଳା ଜଗତେ ବ୍ୟାପିଛି ।। ୩ ।।

ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଶରୀରେ
ଅଲକ୍ଷିତ ରୂପେ ବିହରନ୍ତି ନିରନ୍ତରେ ।। ୪ ।।

ସଦା ସିଦ୍ଧଗଣ ଯା'ର ପାଦପଦ୍ମ ଚିନ୍ତି
ଭୀଷଣ ସଂସାର ଶୋକ ତାପୁଁ ତରିଯାନ୍ତି ।। ୫ ।।

ଯାହାଙ୍କ କରୁଣା ବଳେ ଏ ବିଶ୍ୱ ଚରିତ
ଚନ୍ଦ୍ର ସୂର୍ଯ୍ୟ ଯାହା ଆଜ୍ଞା ପାଳନ୍ତି ନିୟତ ।। ୬ ।।

ଗ୍ରୀଷ୍ମ ବର୍ଷା ଶରତ ଷଡ଼ଋତୁ ଆଦି
ଏକ ପରେ ଏକ ଯାଉଛନ୍ତି କାର୍ଯ୍ୟସାଧି ।। ୭ ।।

ଯେବଣ ଦେଖି ପାଳନ୍ତି ପୃଥୀ ଚରାଚର
ବୋଲେ ବିକ୍ରମ ତା' ପାଦେ ଶରଣ ମୋହର ।। ୮ ।।





# ଚାହଁବାରେ ମନ ଚକାଡ଼ୋଳାକୁ

ହୃଦାନନ୍ଦ ଦାସ

ମେଘ-ମାଳାକୁ
ନିନ୍ଦେ କଳାକୁ
ଚାହଁବାରେ ମନ ଚକାଡ଼ୋଳାକୁ ।। ୦ ।।

ଏ ଭବ ସରିତେ ତରିଗଲେ ଭକ୍ତେ
ଆଶ୍ରେ କରି ଯାର ନାମ-ଭେଳାକୁ
ସଦାଶିବ ହର ହୋଇଲେ ଅମର
କୋଳେ ଧରିଛନ୍ତି ଗିରିବାଳାକୁ
ଗୁନ୍ଥି ମାଳାକୁ, ପିନ୍ଧି ଗଳାକୁ
ନାମ ପଢୁଛନ୍ତି କଳା ଧଳାକୁ ।। ୧ ।।

ସତ୍ୟରେ ଶ୍ରୀପତି ସମୁଦ୍ରକୁ ମନ୍ଥି
ତହିଁରୁ ଜାତ କଲେ କମଳାକୁ
ଦେବାସୁର ଯୁଦ୍ଧେ ଅମୃତ ବିବାଦେ
ମୋହିନୀ ହୋଇଲେ ଦେବ ଛଳାକୁ
ରାହୁ ଗଳାକୁ ଛେଦି ହେଳାକୁ
ମୋହ କଲେ ମହାଦେବ ଭୋଳାକୁ ।। ୨ ।।

ତ୍ରେତୟା ଯୁଗରେ ରାମ ଅବତାରେ
ଭଜ ମନ ବାରେ ରଘୁବଳାକୁ
ପାଇ ସୀତା ଛଳ ଘେନି କପିବଳ
ସିନ୍ଧୁରେ ବାନ୍ଧିଲେ ଶିଳା ଭେଳାକୁ
ଜାତ ଖେଳାକୁ ରଣ ଘଞ୍ଚାକୁ
ରଣେ ଛେଦିଲେ ବିଶ୍ରବା ବଳାକୁ ।। ୩ ।।





ଦ୍ୱାପର ଯୁଗରେ ଜନ୍ମି ଗୋପପୁରେ
ଓପାଡ଼ି ପକାଇଲେ ଯାମଳାକୁ
କାଳିନ୍ଦୀରେ ପଶି କାଳୀ ଦର୍ପ ଧ୍ୱଂସି
ନିବାରିଲେ ମହା ବିଷ ଜାଳାକୁ
ଯାଇ ମେଳାକୁ ରଙ୍ଗ ସ୍ଥଳାକୁ
କପଟେ ମାଇଲେ ସେ ମଉଳାକୁ ।। ୪ ।।

ଏ କଳି ଯୁଗରେ କଳ୍ପବଟ ମୂଳେ
ମାଡ଼ି ବସିଛନ୍ତି ଲକ୍ଷେ ଶିଳାକୁ
ବିକାଇଲେ ଅନ୍ନ ନେଲେ ଜାତି ଧର୍ମ
କେହି ନ ଖୋଜଇ କାହା ଧର୍ମକୁ
କ୍ଷେତ୍ର ସ୍ଥଳାକୁ ମୁକ୍ତି ଖଳାକୁ
ଭାବେ ହୃଦାନନ୍ଦ ସନ୍ତ ମେଳାକୁ ।। ୫ ।।





# ମନ ଭଜରେ ଚିତ୍ତ

ବଲ୍ଲଭ ଦାସ

ମନ ଭଜରେ ଚିତ୍ତ ! ଭଜରେ ମନ ଭଜରେ
ଅନାଥର ନାଥ ଦେବ ଜଗନ୍ନାଥ
ଦେବ ନାକପଦ ମନ ! ଭଜରେ
କାଳ ଏ ସକଳ ସକଳ ପ୍ରବଳ
କଳିକାଳ ମୋହ ଚିତ୍ତ ! ବର୍ଜରେ ।। ଘୋଷା ।।
ବରଜ ମଣ୍ଡନ ବନଜ ବଦନ
ଭଜନ ଭାବରେ ମଜରେ
ବନଜଚରଣ ମୂରଲୀ ବଦନ
ନନ୍ଦସୁତ ଦ୍ୱିଜରାଜରେ ।। ୧ ।।
ଆଳୀଙ୍କି ପାଳିଲେ ବାଳିକି ଦଳିଲେ
ବନେ ଛଳି ସୁରରାଜରେ
ଟେକି ଗୋବର୍ଦ୍ଧନ ରଖିଲେ ଗୋଧନ
ବରଷ ସପତ ବ୍ରଜରେ ।। ୨ ।।
ଅସୁର କେଶୀକି ନାଶିଲେ ନ ଶଙ୍କି
ଧ୍ୱଂସିଲେ ଦନୁଜ ରାଜରେ
ଉଗ୍ରସେନ ମାଥ ଉଞାରିଲେ ଛତ୍ର
ଉଦେ କଲେ ମଧୁରାଜରେ ।। ୩ ।।
ମନ ! କର ମନ ମଦନ ମୋହନ
ଶରଣ ଚରଣ କଞ୍ଜରେ
ହରିବ ଦୁରିତ ହରିର ଚରିତ
ତୁରିତେ ତୁ ଚିତ୍ତ ମଜରେ ।। ୪ ।।
ହୋଇଲେ ଶରଣ ହୋଇବୁ କାରଣ
ରଖିଛି ବନେ ଯେ ଗଜରେ
ବୋଲଇ ବଲ୍ଲଭ ଚରଣ ପଲ୍ଲବ
କୃଜ ଦେବେ ଦେବରାଜରେ ।। ୫ ।।







# ଜଗବନ୍ଧୁ ନାଥଙ୍କୁ

*କଞ୍ଚଲତା ଚେମା*

ଜଗବନ୍ଧୁ ନାଥଙ୍କୁ ଯେ ମୂର୍ତ୍ତି ନୁହଇ ।
ଯେଣିକି ଚାହିଁଲେ ତେଣେ ଶ୍ରୀମୁଖ ଦିଶଇ ।। ଘୋଷା ।।

ଧନ୍ୟ ତାଙ୍କ ଚକାଆଖି ମନ ରହିଯାଏ ଲାଖି
ବାହୁ ଟେକିଛନ୍ତି ଦୁଃଖୀ ତାରିବା ପାଇଁ ।। ୧ ।।

ମାଳାମାନ ଲମ୍ବିଥାଇ ପାଦତଳ ଯାଏଁ ରହି
ଛାମୁରେ ଗହଳି ଭିଡ଼େ ପଶି ନୁହଇ ।। ୨ ।।

ଯେଣିକି ଦେଲେ ନୟନ ଦିଶଇ କଳା ବଦନ
କଟୀରେ ଯେ ପୀତାମ୍ବର କି ଶୋଭା ପାଇ ।। ୩ ।।

କବି କଞ୍ଚଲତା ଚେମା ବୋଲେ ଦୋଷ କର କ୍ଷମା
ପ୍ରଭୁ ତୁମ୍ଭ ପାଦେ ପଡ଼ି ଉଠିବି ନାହିଁ ।। ୪ ।।





# ପ୍ରଭୁ କି ସୁନ୍ଦର ଦିଶ

*ଆର୍ତ୍ତ ଦାସ*

ପ୍ରଭୁ କି ସୁନ୍ଦର ଦିଶ ବସି ରତ୍ନସିଂହାସନ ।
ପାପୀମାନେ ତରି ଗଲେ କରି ତୁମ୍ଭ ଦରଶନ ।।

ଶଙ୍ଖ ଚକ୍ର ଗଦା ପଦ୍ମ ଦେଖିଣ ଆନନ୍ଦ ମନ ।
ମସ୍ତକେ ପୂର୍ଣ୍ଣିମା ଚାନ୍ଦ ଦିଶେ କେଡ଼େ ଶୋଭାବନ ।।

ମାଳମାନ ଲମ୍ବିଥାଇ ପାଦତଳ ଯାଏଁ ରହି ।
ବାସନାରେ ଚହଟଇ ପ୍ରଭୁ ତୁମ୍ଭ ଅଙ୍ଗମାନ ।।

କଟୀତଟେ ପୀତାମ୍ବର ଲମ୍ବିଥାଇ ପାଟ ଡୋର ।
ବାଙ୍କ ଚାହାଣି ତୁମ୍ଭର ଅଙ୍ଗେ କର୍ପୂର ଚନ୍ଦନ ।।

ସୁବର୍ଣ୍ଣରେ ହସ୍ତ ପାଦ ନଶୁଣ ହେ ଭକ୍ତ ଭେଦ ।
ଭାବି କହେ ଆର୍ତ୍ତ ଛାର ଡାକକୁ ନଶୁଣ ।।
ପ୍ରଭୁ କି ସୁନ୍ଦର .... ।।







# ଆହେ ନୀଳାଦ୍ରିବିହାରୀ

ଗଜପତି ମୁକୁନ୍ଦଦେବ

ଆହେ ନୀଳାଦ୍ରିବିହାରୀ ।
କଟକେ ଅଟକ ହେବାରୁ ମୋ' ଦିନ
ସରୁ ନାହିଁ ଝୁରି ଝୁରି ।।

ବାବୁ ଚିନ୍ତାମଣି ତରକ ନ ଜାଣି
ରାମଚନ୍ଦ୍ରଙ୍କୁ ଆଣିଲେ ।
ରାଜାଧିପଣ୍ଡିତ କୈବଲ୍ୟ ଲଙ୍ଘିଣ
ବାରବାଟୀ ଧରାଇଲେ ।।

ଚକାଆମ୍ଭଠାରୁ ବିକାସାଇ ଯାଏ
ଝାଡ଼ ଜଙ୍ଗମ ବୁଲିଲି ।
ତୁମ୍ଭରି ଶ୍ରୀମୁଖ ଦର୍ଶନ ନ ପାଇ
କଟକେ ଅଟକ ହେଲି ।।

ବାବୁ ହରିହର ସୁପାତ୍ର ମୋହର
ବାରେ ମୋତେ ଦୟା କର ।
ଭଣ୍ଡାରରୁ ଖଣ୍ଡା ବାହାର କରିଣ
ପ୍ରଭୁ ! ଓଡ଼ିଶା ଶତ୍ରୁ ନିବାର ।।

ମୁହିଁ କର୍ମହୀନ କରୁଛି ଜଣାଣ
କିମ୍ପା ନ ଶୁଣ ଗୁହାରି ।
ଶ୍ରୀଚରଣ ତଳେ ଶରଣ ପଶୁଛି
ଓଡ଼ିଶା ନବକେଶରୀ ।।





# କାହାକୁ ମୁଁ କରିବଇଁ ସାକ୍ଷୀ

*ସାନନ୍ଦ ଦ୍ୱିଜ*

କାହାକୁ ମୁଁ କରିବଇଁ ସାକ୍ଷୀ
ହେ ଚକାଆକ୍ଷି ।। ଘୋଷା ।।

ଡାକିଲେ ନାମ ଆରତେ
ନଶୁଣ କିମ୍ପା ଚରିତେ
କି ବିଚାରି ହୃଦ ଗତେ
ନ ଡେର ଶ୍ରବଣ ପଥେ
ଜପିନାମ
କଣ୍ଠ ଗଲା ଶୁଖି ହେ ।। ୧ ।।

ମୋ ଶୋଷ ଘଟ ମାତର
ତୁମ୍ଭ କୃପା ଅକୂପାର
ରଖିଛି ରଙ୍କ ଉଦର
ତୃଷା ନ ହରଇ ମୋର
ହେଉଅଛ
ନିଷ୍ଠୁର କାହିଁକି ହେ ।। ୨ ।।

ନେବ ବୋଲି କିଛି ଲାଞ୍ଚ
ମନେ କରିଅଛ ପାଞ୍ଚ
ସେ କଥା ମନରୁ ମୁଞ୍ଚ
ବଳିଗଲା ମନ ସ୍ୱଚ୍ଛ
ଗୋପପୁରେ
ପୟ-ସର ଚାଖି ହେ ।। ୩ ।।

ପାଇ ନାନା ଉପବନ
ହେବାରେ ହରଷ ମନ
ଅଳସ କି ଅପଘନ
ଘାରିଲା ନିଦ୍ରା ନୟନ
ନ ଶୁଣୁଛ
ସେ କାରଣୁ କି କି ହେ ।। ୪ ।।

କହଇ ସାନନ୍ଦ ଦ୍ୱିଜ
ଆହେ ପ୍ରଭୁ ଚତୁର୍ଭୁଜ
ଗଲାନି କି ପୂର୍ବ ତେଜ
ଦୁଃଖି ଦୁଃଖ ଯା ନ ବୁଝି
ହୋଇବାରୁ
ନୀଳାଚଳେ ସୁଖୀ ହେ ।। ୫ ।।





# କଳାକୃଷ୍ଣ କମଳଆଖି

ଭରତ ଦାସ

କଳାକୃଷ୍ଣ କମଳଆଖି
ଡାକିଲେ ନଶୁଣ କାହିଁ ପାଇଁକି ।। ଘୋଷା ।।

ଶ୍ରୀ ନୀଳକନ୍ଦରେ ବିଜେ କରିଅଛ
ମିଛେ ଭଣ୍ଡିବାକୁ ଲୋଡୁଅଛକି ।। ୦ ।।

ଅହଲ୍ୟା ତାରଣ ଭୟ ନିବାରଣ
ବାଳିକି ମାରି ରଖିଲ ସୁଗ୍ରୀକି ।। ୧ ।।

ମହା ବଳବନ୍ତ ବିଶ୍ରବାର ସୁତ
ଛେଦି ପକାଇଲ ଦଶଶିର

ଲକ୍ଷେ ଯୋଜନରେ ଗଜ ଡାକଦେଲା
ତା' ଡାକ ଶୁଣିଲ ପଶା ଖେଳେବି ।। ୨ ।।

କୁରୁ ସଭାତଳେ ଦ୍ରୌପଦୀ ଚିନ୍ତିଲା
ତାକୁ କୋଟି ବସ୍ତ୍ର ଦେଇ ଥିଲକି

ଭାରତ ଯୁଦ୍ଧରେ ଘଣ୍ଟ ଘୋଡ଼ାଇଣ
ରଖିଥିଲ ଭରତିଆ ପକ୍ଷୀକି ।। ୩ ।।

ସେ ରଥରେ ଥରେ ଅର୍ଜୁନ ରଥରେ
ଆପଣ ସାରଥି ହୋଇଥିଲ କି

ଭଣଇ ଭରତ ଆହେ ଜଗନ୍ନାଥ
ମୋ ମନ ରହିବ ନୀଳାଚଳେବି ।। ୪ ।।







# ଦୀନବନ୍ଧୁ କୃପାସିନ୍ଧୁ

ବଳଭଦ୍ର

ଦୀନବନ୍ଧୁ ! କୃପାସିନ୍ଧୁ ! ମୋ ବନ୍ଧୁ କେ ବୋଲାଇବ
(ଯେବେ) କୃପାରେ କୃପଣ ହେବ ? ।। ଘୋଷା ।।

ବିପଦ ନାଶନ ବାନା    ବିପଦକୁ ବଜ୍ର ସେହ୍ନା
ଉଡ଼ାଉଛ ହେ ଇନ୍ଦିରା ଧବ !
ବିପଦରେ କେ କାହିଁକି ଶରଣ ଯିବ
ଜୀବଧନ ନ ଶୁଣିଲେ କର୍ମକୁ ଆଦରିବ ।। ୧ ।।

ଥାଉ ଥାଉ ଗଙ୍ଗାକୂଳେ    ତୃଷାର୍ତ୍ତକି ତୃଷା ବଳେ
ପୟ ବିନା ପ୍ରାଣ ହରାଇବ
ତୁମ୍ଭେ ବୁଝ ନିନ୍ଦା ଲାଜ କାହାକୁ ହେବ
କଳ୍ପବୃକ୍ଷ ହୋଇ ଯେବେ କର୍ମକୁ ନ ଫଳିବ ।। ୨ ।।

ହେ ପ୍ରଭୁ କରୁଣା ରାଶି    ଭବଜଳେ ଗଲି ଭାସି
ପଛେ ଥାଇ ନାବ କି କରିବ
ଚକ୍ରଧର ! ଚକ୍ର କିମ୍ପା କରେ ବହିବ
ଚକ୍ର ହେଲା ଧାର ବୋଲି ବାଜିଣ ଯିବ ।। ୩ ।।

ଶୁଣ ବା ନଶୁଣ ବାରେ    ଜଣାଉଛି ଶ୍ରୀଛାମୁରେ
କିଞ୍ଚିତରେ ଦୟାତ ହୋଇବ
ବୋଲେ ବଳଭଦ୍ର ଯା' ବିଚାର ଯାଦବ
ଶିରୀଷ ଫୁଲରେ ଯେବେ କୁଳୀଶ ବରଷା ହେବ ।। ୪ ।।





# ଦୀନେ ଦୟା ନୋହିଲା

ରାମଚନ୍ଦ୍ର

ଦୀନ ବାନ୍ଧବ ହୋଇ ଦୀନେ ଦୟା ନୋହିଲା
ତୋ ଭରସା କରି ହରି ! ବିଅର୍ଥେ ପ୍ରାଣ ଗଲା ।। ଘୋଷା ।।

ଜଗବନ୍ଧୁ ହେ
ଯେତେଦୂରେ ଯେତେ ଯେତେ ମୋକ୍ଷଣ ହେଲ
ତୁମ୍ଭରେ ଭରସା କରି ଦ୍ରୁପଦ ରାଜକୁମାରୀ
ଶୁଣିଛି ଥିଲ ଉଧରି
ମୋ ଦୁଃଖ ନ ଲାଗିଲା ।। ୧ ।।

ପତି ଶାପେ ଘୋର ବନେ ଥିଲା ଅହଲ୍ୟା
ଲାଗି ଶ୍ରୀଚରଣ ରେଣୁ ମୋକ୍ଷ ହେଲା ସେ ପାଷାଣୁ
ମୋ ଭରସା ଥିଲା ତେଣୁ
କର୍ମକୁ ନ ଥାକିଲା ।। ୨ ।।

ଗଜରାଜ ଦେବରାଜ ! ଜଳେ ଚିନ୍ତିଲା
ବିଷମ ଗ୍ରାହ ମୁଖରୁ ଉଧରିଛ ଚିନ୍ତା-ନୀରୁ
ସେ କାଳ କରୁଣା ହରି
ଏ କାଳେ କେଣେ ଗଲା ।। ୩ ।।

ଶୁଣିଅଛି ଚକ୍ରପାଣି ! ବେଶ୍ୟା ପିଙ୍ଗଳା
ସର୍ବ ପାପର ଆକର ଥିଲା ଯେ ତାର ଶରୀର
ତାକୁ କରିଛ ଉଦ୍ଧାର
ମୋ ଦୁଃଖ ନ ଲାଗିଲା ।। ୪ ।।

ରାମଚନ୍ଦ୍ର ହେ ଗୋବିନ୍ଦ ! ତାହା ଶୁଣିଲା
ଭୁଜକୁ ଅଛ ବଢ଼ାଇ ବୋଲୁଛ ମୁଁ ରଖିନାହିଁ
ଆଉ କିଏ ଆହେ ହରି !
ପାଣ୍ଡବଙ୍କୁ ରଖିଲା ।। ୫ ।।







# ଭଜ କଳାଧଳା ବେନି ଭାଇଙ୍କି

ଗୋପାଳ

ଭଜ କଳାଧଳା ବେନି ଭାଇଙ୍କିରେ ମନ ।। ୦ ।।

ହୃଦେ କରଡ଼ିମାଳ ପଡ଼େ ଆଲଟ ଚାମର
ତୋ ଜନ୍ମ ସୁଫଳ କର ଚାହିଁକିରେ ।। ୧ ।।

ରତ୍ନ ସିଂହାସନେ ଉଭା କୋଟି କାମ ଜିଣି ଶୋଭା
ମଧ୍ୟରେ ସୁଭଦ୍ରା ଶଶି ମୁହିଁକିରେ ।। ୨ ।।

ଯା'ର ଲାଗିଣ ପୟର ପାଷାଣୁ ନିଜ ଶରୀର
ପାଇଲା ମୁକତି ହେଳା ଚାହିଁକି ରେ ।। ୩ ।।

ଯେତେକ ଅଛି ତୋ ଦୁଃଖ ଜଣାଅ ଚାହିଁ ଶ୍ରୀମୁଖ
ବୋଲେ ଗୋପାଳ ଚତୁର୍ଦ୍ଧାରୂପ ଧାୟିକିରେ ।। ୪ ।।





# ଦୀନବନ୍ଧୁ ଦୟାସିନ୍ଧୁ

*ଦାମୋଦର ଦ୍ୱିଜ*

ଦୀନବନ୍ଧୁ ଦୟାସିନ୍ଧୁ ତୁମ୍ଭେ ଦୁଃଖ ନିବାରଣ ହେ ।। ପଦ ।।

ଆହେ ନୀଳଗିରି ଦରି ବିହାରୀ ପ୍ରଭୁ ଦଇତାରି
ନିତ୍ୟ ପୁରୁଷ ହେ ନିତ୍ୟ ଅବତାରୀ
ନାରାୟଣ ହେ ପ୍ରଭୁଉପକାରୀ
ନରସିଂହ ନରହରି ମୁରାରୀ ହେ
ନଳିନ ଈକ୍ଷଣ ହେ ।। ୧ ।।

ଆହେ ପ୍ରଭୁ ଲକ୍ଷ୍ମୀପତି କଳା ଜଳଧର ମୂର୍ତ୍ତି
ରସିଲି ନାହିଁ ମୁଁ ତୁମ୍ଭ ଭଗତି
ବସିଲି ନାହିଁ ସାଧୁଙ୍କ ସଙ୍ଗତି
ପୋଷିଲି ନାହିଁ ପ୍ରଭୁଙ୍କ ଗୁଣ କୀର୍ତ୍ତି
ମୁଁ କରି ପରିତ୍ରାଣ ହେ ।। ୨ ।।

ଯେବେ ମୋତେ ରଖିବ, ରଖବାର ଆଉ କି ଦିଶିବ
କପାଳରେ ମୋର ଯାହାଥିବ କାଳେ-
କାଳେ ଅନ୍ୟଥା ନୋହିବ
ଏମନ୍ତ ଆଜ୍ଞା ମୋତେ ଯେବେ ହେବ
ଏ କାହାକୁ ଦୂଷଣ ହେ ।। ୩ ।।

ଭଣେ ବିପ୍ର ଦାମୋଦର ଭାରି ହେଲା
ପ୍ରଭୁ କଷ୍ଟ ମୋର
ଭରସା କରିଛି ଶ୍ରୀପଦ୍ମ ପୟର
ଭସାଇ ଦେଲ ହେ ଭବସାଗର
ଭେଳା ହୋଇବ ସେ ଆଉ କାହାର
ମୋ ଘେନିବା ଜଣାଣ ହେ ।। ୪ ।।







# ଅଶେଷ ମଙ୍ଗଳ

ନୃସିଂହ ଗଜପତି

ଅଶେଷ ମଙ୍ଗଳ ପୂର୍ଣ୍ଣକୁମ୍ଭ କଳା ମୁଖ
ବସନ ପ୍ରାୟେକ ବେଢ଼ି ଶୋହେ ରାହୁ ରେଖ ଯେ ।। ୧ ।।

ଜଗନ୍ନାଥ ନାମ ଏକା ତ୍ରିଭୁବନେ ସାର
ଭକ୍ତ ଯାତ୍ରା ଦୁରିତକୁ ଛେଦନ କୁଠାର ହେ ।। ୨ ।।

ଅଧର ଚୂତ ପଲ୍ଲବ ଅରୁଣର ଜ୍ୟୋତି
ଶ୍ରୀ ଫଳତିଳକ କପାଳରେ ବିରାଜନ୍ତି ହେ ।। ୩ ।।

ଅଧର ନୟନ ଶ୍ୱେତ ପଙ୍କଜ ସୁନ୍ଦର
ମଧୁ ଲୋଭେ ଚୁମ୍ବି ରହେ ଡୋଳା ମଧୁକର ହେ ।। ୪ ।।

ବାରତିଥି ତାରଚନ୍ଦ୍ର ଯୋଗ ଏ କରଣ
କିଛି ନ ବିଚାରି ପଶ ନାମରେ ଶରଣ ହେ ।। ୫ ।।

କାଳବେଳ ଶୁଭ ଲଗ୍ନ ନବଗ୍ରହ ଶାନ୍ତି
ପଦକୁ ପଦ ସମ୍ଭରି ନ ଥାଇ ବିପତ୍ତି ହେ ।। ୬ ।।

ଯାତ୍ରାର ଆରମ୍ଭ ବେଳେ ଗୋବିନ୍ଦ ସୁମର
ଲାଭ ଘେନି ଗ୍ରହମାନେ ଥିବେ ସଙ୍ଗତର ହେ ।। ୭ ।।

ଜଗନ୍ନାଥ ପଦ୍ମପାଦେ ଚିନ୍ତ ହେ ସୁମତି
ପଦଯୁଗ ବନ୍ଦିତ ନୃସିଂହ ଗଜପତି ହେ ।। ୮ ।।





# ଆହେ ମହାପ୍ରଭୁ

ପଦ୍ମନାଭ ପଟ୍ଟନାୟକ

ଆହେ ମହାପ୍ରଭୁ ନୀଳାଦ୍ରିସିଂହ କମଳାପତି
ତୁମ୍ଭ ଥାଉ ଦୀନଜନରେ ପଡୁଅଛି ବିପତ୍ତି ।। ୧ ।।

ପତିତପାବନ ବାନାକୁ ନୀଳଚକ୍ରେ ଉଡ଼ାଅ
ମୋହବେଳକୁ ଏ ମହିମା କାହିଁପାଇଁ ବୁଡ଼ାଅ ।। ୨ ।।

ଅପରାଧ ଅଛି ଏମନ୍ତ ଘେନିଛକି ଚିତ୍ତରେ
ଅପରାଧ ଭୟ ଭଞ୍ଜନ ବାନା ଏ ଜଗତରେ ।। ୩ ।।

ଶରଣ ସମ୍ଭାଳ ପରା ହେ ବାଞ୍ଛା କଳ୍ପତରୁ
ଅଶରଣ ଜନ ରଖିଲେ ସିନା ଏ ଆରତରୁ ।। ୪ ।।

ଦୁରିତ ସମୁଦ୍ରେ ଭାସୁଛି ପ୍ରଭୁ ଏକି ଉଚିତ
କଳୁଷ ନାଶନ ବାନାକୁ ଏତ ଅଟେ କିଛୁତ ।। ୫ ।







# ଜୟ ଜୟ ହରି

ରାଧାନାଥ

ଜୟ ଜୟ ହରି ନୀଳାଦ୍ରି ବିହାରୀ
ଘେନି କରେ ଅରି ଅଛ ବସି
ପାପମତ୍ତ କରୀ କୋପ ଚିତ୍ତ ଧରି
ମୋ ହୃଦ କମଳ ବନେ ପଶି
ଆହେ ବ୍ରହ୍ମରାଶି
ଧର୍ମକର୍ମ ସବୁ ଦିଏ ନାଶି ।। ୧ ।।

କଳା ବଳୟକ କମନୀୟ ମୁଖ
ଦେଖିଲେ ମୋ ଦୁଃଖ ହୁଏ ଦୂର
ସୁରଙ୍ଗ ଅଧର ଦିଶେ କି ସୁନ୍ଦର
ଧାତା ପୁରନ୍ଦର ଯା' କିଙ୍କର
ଆହେ କମ୍ବୁଧର
ଶମ୍ଭୁ ସେ ବିଞ୍ଚନ୍ତି ଯା' ପୟର ।। ୨ ।।

ପବିତ୍ର ଜାହ୍ନବୀ ଯା' ପଦୁ ସମ୍ଭବି
ଜଗତକୁ କଲେ ପରିତ୍ରାଣ
ଗୌତମ ମହିଳା ହୋଇଥିଲେ ଶିଳା
ମୁକ୍ତ ହେଲା ଲାଗି ଶ୍ରୀଚରଣ
ଆହେ ନାରାୟଣ
ଭୟ କର ମୋର ନିବାରଣ ।। ୩ ।।

ଜୟ ଦୀନବନ୍ଧୁ ଅଘତମ ଇନ୍ଦୁ
ନାମ କୃପାସିନ୍ଧୁ ଅଛ ବହି
ଚିତ୍ତେ ମୋତେ ଉଣା ନ କର କରୁଣା
ଦୀନ ରାଧାନାଥ ଗୀତେ କହି
ଆହେ ଭାବଗ୍ରାହୀ
ଜୀବ ଯାଉ ତବ ନାମ ଗାଇ ।। ୪ ।।





# ଦୀନବାନ୍ଧବ ହେ

ବାଙ୍କା ଦାସ

ଦୀନବାନ୍ଧବ ହେ ! କେକି ଦେଲା ମୁଁ ନ ଦେଲି ?
ଟେକିଅଛ କର ଡାକିଲା ପ୍ରକାର
ଠକି ଦେଲ ମୁଁ କି କଲି ।। ଘୋଷା ।।
ତାରିଛ କରୀକି ମାରି ତା ଅରିକି
ସ୍ମରି ସେ ହେବାରୁ ଘାଲି
ବାଜାବଜା ପାପୀ ରାଜା ଅଜାମିଳ
ସଜାରୁ ହୋଇଲା ଖାଲି ।। ୧ ।।
ଡରି ମରୁଥିଲା ହରି ଘେନିଗଲା
ତରିଗଲା ହରି ବୋଲି
ଗଞ୍ଜାଇ ଭୁଞ୍ଜାଇ ଗଞ୍ଜାଇ ମାରୁଛ
କେଉଁ ଅପରାଧ କଲି ।। ୨ ।।
ଅନ୍ଧ ବିପ୍ରକୁ ଚକ୍ଷୁଦାନ ଦେଲ ତା-
ପୁତ୍ର ସଙ୍ଗେ ଖେଳି ବାଲି
ଅଧମ ଦାସକୁ ଉଦ୍ଧରିଲ ନାହିଁ
ବଧ ହେଲି ବୁଲି ବୁଲି ।। ୩ ।।
ପିଲାଟି ଦିନରୁ ଡକା ପକାଉଛି
ଫକା ହୁଅନ୍ତାଣି ନାଲି
ବଙ୍କା ବୋଲେ ଚକା- ନେତ୍ର ନ ଜାଣଇଁ
ଏଡ଼େ ଡକାଇତ ବୋଲି ।। ୪ ।।







# ହେ ନୀଳ ଅଚଳ ବିହାରୀ

ପରମାନନ୍ଦ ଦ୍ୱିଜ

ମହାପ୍ରଭୁ ମହା ଆର୍ତ୍ତ ହେଲା
ହେ ନୀଳ ଅଚଳ ବିହାରୀ
ଆରତ ତାରଣ ବୋଲାଇ ଆପଣ
ନ ଶୁଣ ଆରତେ କଲେ ଗୁହାରି ।। ଘୋଷା ।।
ଆହେ, ଆଶ୍ରେ କରି ତୁମ୍ଭେ ଅଭୟ ପାଦକୁ
ପ୍ରମାଦ ବୃଦ୍ଧି ହେଉଛି
ସନ୍ତାପ-ସରିତେ ପଡ଼ି ବୁଡ଼ିଗଲା
ଉଦ୍ଧାରେ କୃପା ନୋହୁଛି ।। ୧ ।।
ଜଣାଇଲେ ଜଣା କର ପରା ପ୍ରଭୁ
ମହା ବିପତ୍ତି ଭୟକୁ
କରୁଣା ନିଧାନ ହୋଇ ସାବଧାନ
ନୋହିଲା ମୋ ବିଷୟକୁ ।। ୨ ।।
ଦୁଃଖୀ ମୁଁ ଦୁଃଖ ନାଶନ ବୋଲି
ତୁମ୍ଭେ କରିଛି ହେ ଭରସା
ଚିତ୍ତ ଚାତକ ଆଶା ତୋଷ ନ କଲ
କରି କରୁଣା ବରଷା ।। ୩ ।।
ଦୀନ ବାନ୍ଧବ ନାମ ବହି
ପତିତପାବନ ବାନା ଉଡ଼ାଅ
ମୁଁ ଅତିହୀନ ପତିତ
ମୋହଠାରେ ଏ ମହିମା ନ ବୁଡ଼ାଅ ।। ୪ ।।
ଯାହାକୁ ଯେତେ ଦୁର୍ଗତିରୁ ରଖିଛ
ମୋ ପରି କେହି ନୁହଁଇ
କରି ମହାଘୋର ସଂକଟରୁ ପାର
ପରମାନନ୍ଦ କହଇ ।। ୫ ।।





# ଜୟ ଜୟ ଜଗବନ୍ଦନ

*ସୋମନାଥ ସିଂହ ମର୍ଦ୍ଦରାଜ*

ଜୟ ଜୟ ଜଗବନ୍ଦନ କେଶବ
ଜୟ ହେ ଯାମାଜ ଭଂଜ
ଗର୍ବୀ ଜନଗର୍ବ ତୁରିତେ ଭଂଜ ।। ଘୋଷା ।।

ଚଉଦ ବ୍ରହ୍ମାଣ୍ଡେ ପ୍ରକାଶି ଅଛ
ଯେ ଯାହା କାମନା କଲେ ଦେଉଛ

ଏମନ୍ତ ମହିମା କେ କରେ ଅନ୍ତ
ଅନ୍ତର୍ଯ୍ୟାମୀ ନାଥ କମଳା କାନ୍ତ ।। ୧ ।।

ଦୁଃଖୀ ଜନ ଦୁଃଖ ଦେଖି ନ ସହ
ପତିତ ଜନ ପାବନ ବୋଲାଅ

ଶଙ୍ଖ ଚକ୍ର ଗଦା ପଦ୍ମକୁ ବହ
ଦାନବଙ୍କୁ କାଳ ଦେବତା ହୁଅ ।। ୨ ।।

ଦୂରେ ଥାଇ ନୋହୁ କରେ ଗୁହାରି
ରଖିବ ବୋଲି କର୍ଣ୍ଣ ଥାଅ ଡେରି

ତ୍ୱରିତେ ମାନସ ପୂର୍ଣ୍ଣ କରି
ଚକ୍ରେ ବିନାଶ କର ଗ୍ରାହ ପରି ।। ୩ ।।

ଶରଣ ଜନକୁ ଅମର କର
କରୁଣା ସାଗର ନାମ ତୁମର

କହି ଶେଷ ନୁହେଁ କୀରତି ଯା'ର
ଧୀରତି କର ଇନ୍ଦ୍ରେଶ ପ୍ରକାର ।। ୪ ।।





ଚିନ୍ତାରେ ଯା'ର ବୁଦ୍ଧି ନ ଦିଶଇ
ଚିନ୍ତାମଣି ବୁଦ୍ଧି ଚିରୋଇ ଦେଇ
ଭାରତେ ଅର୍ଜୁନ ଯେସନେ କହି
କୌରବଙ୍କୁ ନାଶିଲ ସାହା ଦେଇ ।। ୫ ।।

ନୃପତି କୁଳେ ପଦ୍ମ ଦିନମଣି
ବୀରାଧୀ ବର ବୀରଙ୍କ ଅଗ୍ରଣୀ
ରାଜା ଶ୍ରୀ ସୋମନାଥ ସିଂହ ଭଣି
କିଞ୍ଚିତେ କୃପା କର କମ୍ବୁପାଣି ।। ୬ ।।





# ଦୀନବନ୍ଧୁ ନାମ

**କମଳଲୋଚନ**

ଦୀନବନ୍ଧୁ ନାମ ବହନ ହେ
ତେଜ ଶ୍ରୀ ମଦନମୋହନ ।। ୦ ।।

କରି ତୁମ୍ଭ ପଦ୍ମ ପାଦକୁ ଆଶ
କହୁଁ କହୁଁ ଦୀନ ଯାଉଛି ନାଶ
କୃପାସିନ୍ଧୁ କୃପା ଦିନେ ହେଁ ନ କଲ
କେଉଁ ହେତୁ କଲ ଏତେ ନିରାଶ ।। ୧ ।।

କରୀ ଡାକିଲା ପ୍ରସନ୍ନ ହୋଇଛ
କରି ଅଭୟ ସୁଖକୁ ଦେଇଛ
କ୍ଲେଶ ନିବାରଣ ଆରତ ତାରଣ
ସେ ମହିମା ଏବେ କାହିଁ ଥୋଇଛ ।। ୨ ।।

ସର୍ବୋପରି ହରି ତୁମ୍ଭ ଚରଣ
ଶରଣ ପଶିଲି ହେବି କାରଣ
ତାରଣ ନ କଲ ଦାରୁଣ ହୋଇଲ
କେ ମୋର କଷ୍ଟ କରିବ ବାରଣ ।। ୩ ।।

ଶ୍ରବଣ କରି ତୁମ୍ଭ ଚରିତରେ
ଭବୁ ତରିବି ହେଲେ ଦୂରୀତରେ
କରିଥାଇ ଏ ଭରସା ପ୍ରଭୁ ମୋତେ
ଭସାଇ ଦେଲ ଚିନ୍ତା ସରିତରେ ।। ୪ ।।





ଶୁଣି ସେ ନାମ ମହିମା ବଳିକୁ
ସଂଶୟ ମୋର ନ ଥାଉ କାଳକୁ
ବେଳକୁ ଏ ସବୁ ମିଥ୍ୟା ହେଉଅଛି
କଥା ରହୁଛି ଅପାର କାଳକୁ ।। ୫ ।।

ପ୍ରଭୁ ଥାଇ ପୀଡ଼ା ପାଉଛି ଯାହା
ପଦ୍ମଲୋଚନ କି ନ ଜାଣ ତାହା
ପରିତ୍ରାଣ ଏଥୁଁ ନ କଲେ କମଳ-
ଲୋଚନର ଆଉ ଅଛି କେ ସାହା ।। ୬ ।।





# ଚକା ଆଖି

**ଭଗବାନ**

ଚକାଆଖି, ଥକ୍‌କା ହୋଇଲକି ଏବେ
ବଙ୍କ ଚିରା ପ୍ରଭୁ ଢକ୍‌କା ବଜାଇ ମୁଁ
ଡାକୁଛି ନଶୁଣ ଲବେ ।
ଧକ୍‌କା ମାରି ମୋତେ ବେଳୁବେଳ ଦୁଃଖ
ରଖାଇ ନ ଦେବ ଠାବେ ...
ଭିକାରୀ ପରାଏ ବୁଲାଇ ମାରୁଛ
ଶିକାରୀ ହୋଇ ଗରବେ ।। ୧ ।।

ସଖା ସହୋଦର କେହି ନାହିଁ ମୋର
ଠେକା ବାନ୍ଧି ଦେଖା ଦେବେ
ଏକା ତୁମ୍ଭ ନାମ ଭରସା କରିଛି
ଟେକି ନିଅ ଦୟା ନାବେ ।। ୨ ।।

ଭାତ ବିକା ପ୍ରଭୁ ନିନ୍ଦକେ ବସିଲେ
ନିନ୍ଦା କରିବେ ସରବେ
ଡକା ଛାଡ଼େ ଦୀନ ଭଗବାନ
ଆଶ୍ରା ଶୂନ୍ୟ ହୋଇ ଭବେ ।। ୩ ।।







# କି ଶୋଭା କଳା ଶ୍ରୀମୁଖ

*ବାମନ ଦାସ*

ଆଳତିବେଳ ବଡ଼ ଦେଉଳେ
କି ଶୋଭା କଳା ଶ୍ରୀମୁଖ
ପାଞ୍ଚ ମନକୁ ଏକ କରିଣ
ଚାହିଁଲେ ହରିବେ ଦୁଃଖ (ମନରେ)
ବାଦ୍ୟ ଗହଳ ଶୁଭେ ଚହଳ
ବାଜୁଅଛି ଜୟ ଶଙ୍ଖ ।। ୧ ।।
ଘଣ୍ଟା ନାଦରେ ଚିତ୍ତ ଭେଦରେ
ମନକୁ ହରିଣ ଲକ୍ଷ୍ୟ
ବ୍ରହ୍ମାଦି ମୁନି କରନ୍ତି ଧ୍ୱନି
ଡାକ ଶୁଭେ ଲକ୍ଷ ଲକ୍ଷ ।। ୨ ।।
ଭକ୍ତେ ଡାକନ୍ତି ଆହେ ଶ୍ରୀପତି
ଏ ଭବ ମାୟାରୁ ରଖ
ବାମନ ଦାସ କରିଣ ଆଶ
ପଡ଼ିଣ ଅଛି ନିରେଖ ।। ୩ ।।





# ସବୁଥିରୁ ବଞ୍ଚିତ କରି

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର

ସବୁଥିରୁ ବଞ୍ଚିତ କରି କେଉଁ ଯଶବାନା ଉଡ଼ାଇବ ହେ ?
ଯାହା ଦେଇଥିଲ ସବୁତ ନେଲଣି,
ଆଉ ଏବେ କିସ ଛଡ଼ାଇବ ହେ ।। ଘୋଷା

ସଂସାରେ ଯେ କରଇ ଆଶ, ଧାଏଁ ସିନା ସେ ତୁମ୍ଭ ପାଶ,
ସକଳ ଭରସା ଯାର ତୁଟିଲାଣି
କିସ ବୋଲି ତାକୁ ଡରାଇବ ହେ ।।

ଠକି ଠକି ଥରକୁ ଥର ବୁଝିଲିଣି ତୁମ୍ଭ ଚାତର,
ମନେ ପାଉଛ କି ହାଟ ମଝିଟାରେ
ଛିଡ଼ା କରି ବାଟ ହୁଡ଼ାଇବ ହେ ।।

ତୁମ୍ଭ ଫନ୍ଦା ଏଡ଼ିବି ବୋଲି ସବୁ ଧନ୍ଦା ଦେଲିଣି ଠେଲି,
ଚାରି ଦଉଡ଼ି ଯେ କାଟି ସାରିଲାଣି
କେଉଁ ଫାନ୍ଦେ ତାକୁ ଚଢ଼ାଇବ ହେ ।।

ହାତ ଠାରି ଲୋଭ ଦେଖାଇ ତାକ ନାଟ ଦେଖିବା ପାଇଁ,
ସିହାଣ କରୁଛ ଆହୁରି ଥରେ କି
ନାକ ଘଷି କାନ ମୋଡ଼ାଇବ ହେ ।।







# ମିଛେ ନୀଳାଚଳ ନାଥ

**ବୈଷ୍ଣବ ପାଣି**

ମିଛେ ନୀଳାଚଳନାଥ, ବସିଅଛୁ ନୀଳାଚଳେ
ପଣ୍ଡା ରନ୍ଧାଭାତ ଡାଲି ଗିଳିଣ ବଡ଼ ଦେଉଳେ ।। ପଦ ।।

ଗଣ୍ଡାଗଣ୍ଡା ହଣ୍ଡାହଣ୍ଡା କାକରା ଆରିସା ମୁଣ୍ଡା
ଥଣ୍ଡା ହୋଇ ଦୁଇଭାଇ ଭଣ୍ଡିଖାଇ ପାଞ୍ଚବେଳେ ।। ୧ ।।

ଥୟ ହେଲା ଯହୁଁ ଭୋକ କିପାଁ ଶୁଣିବ କା' ଡାକ
ଅରଜିଲ ମହାସୁଖ ମଣ୍ଡିଧଣ୍ଡା ବଡ଼ଚୂଳେ ।। ୨ ।।

ମୁଣ୍ଡାମୁଣ୍ଡା କୁଣ୍ଡାପିଠା ଶେଷରେ ତୁଣ୍ଡକୁ ମିଠା
ଭକତ ବଚନ ଖଟା ଲାଗିଯାଏ ଭୂ-ମଣ୍ଡଳେ ।। ୩ ।।

କାଣ୍ଡିକେ ଭକତ ଯେତେ ତାହାଙ୍କ ପାଣ୍ଡିରେ ତୋତେ
ଭକ୍ତି ବେଡ଼ି ଦେଇ ହାତେ ଥୋଇ ହୃଦ ବନ୍ଦୀଶାଳେ ।। ୪ ।।

ବଗଡ଼ା ଉଆ ତଣ୍ଡୁଳ ଭୁଞ୍ଜି କପାଳ ଉଣ୍ଡାଳ
ଖଣ୍ଡ ବଇର ଭଞ୍ଜନ ପଣ୍ଡ ନୋହୁ କାଳେ କାଳେ ।। ୫ ।।





# ଅନାଥର ବନ୍ଧୁ

ଗୋପାଳଚନ୍ଦ୍ର ପ୍ରହରାଜ

ଅନାଥର ବନ୍ଧୁ ଆହେ କୃପାସିନ୍ଧୁ
ମୋ' ଦୁଃଖ ହେଲାଣି ଭାରି
ଉଠୁଛି ଲହରି ନାବ ହୁଏ ଘାରି
କେମନ୍ତେ ହୋଇବି ପାରି ।। ୧ ।।

ପ୍ରଲୋଭନେ ପଡ଼ି ସତ୍ୟପଥ ଏଡ଼ି
ବିବେକ ପଥକୁ ହୁଡ଼ି
ରିପୁବଶେ ଗଡ଼ି ମାୟା ମୋହେ ଜଡ଼ି
ପାପେ ଯାଉଅଛି ସଡ଼ି ।। ୨ ।।

ଜାଣୁ ଜାଣୁ ମୁହିଁ ଅନଳକୁ ଡେଇଁ
ହେଉଛି ପତଙ୍ଗ ସରି
ପାପ ପୁଣ୍ୟ ଜାଣି ହୁଏ ମୁଁ ଅଜ୍ଞାନୀ
ହେଉଅଛି ହତଶିରୀ ।। ୩ ।।

ଦେଖି ପର ଦୁଃଖ ନ ହୁଏ ବିମୁଖ
ମନରେ ଗର୍ବ ଆଚରି
ମୁହଁରେ କହଇଁ ଚିତ୍ତେ ନ ହେଜଇଁ
ବେଳକାଳ ଗଲା ସରି ।। ୪ ।।







# ଜଗବନ୍ଧୁ ଜଗତ ମୋହନ

*ଭିକାରୀ ଚରଣ ପଟ୍ଟନାୟକ*

ଜଗବନ୍ଧୁ ଜଗତ ମୋହନ
ଅଧମ ଅଗତି ଉଦ୍ଧାର ପାଇଁକି
ହୋଇଛ ପତିତପାବନ
ନୀଳାଚଳ ବାସୀ ନୀଳାଚଳେ ବସି
ଉଡ଼ାଇ ଦେଇଛ କେତନ ।। ୧ ।।

ଯେତେ ଯେ ଜଗତେ ପତିତ ଜନଙ୍କୁ
ଡାକୁଛ କରିବ ମୋଚନ
ମର୍ତ୍ତ୍ୟପୁରେ ଦେଖି ପାପର ପ୍ରତାପ
ତୁମ୍ଭେ ପାପତାପ ନାଶନ ।। ୨ ।।

କଲ ମର୍ତ୍ତ୍ୟେ ବାସ ସ୍ୱର୍ଗେ ସୁରଗଣ
ଲୋଡ଼ନ୍ତି ତୁମ୍ଭର ଦର୍ଶନ
ଅଶେଷ ପାତକୀ ଡାକୁଛି ଆରତେ
ତ୍ରାହି କର ମଧୁସୂଦନ ।। ୩ ।।





# ମଣିମା ଶୁଣିମା ବାରେ

*ଲୋକନାଥ ପଟ୍ଟନାୟକ*

ମଣିମା ଶୁଣିମା ବାରେ
ଡାକେ ମୁଁ ମନ୍ଦିର ଦ୍ୱାରେ
ବୁଡ଼ିତ ଯାଉଛି ନାଥ    ପଡ଼ି ଦୁଃଖ ପାରାବାରେ ।। ୦ ।।

ବ୍ରହ୍ମାଣ୍ଡେ ବାଜୁଛି ବାଜା
କୃପାଳୁ ନୀଳାଦ୍ରି ରାଜା
ନିବାରି ଦ୍ରୌପଦୀ ଲଜ୍ଜା
ଉଡ଼େ ଯା କୀରତୀ ଧ୍ୱଜା

କୃତାନ୍ତ ଅନ୍ତକାରୀ–କାଣ୍ଡ କୋଦଣ୍ଡ ଧାରୀ
ଚରାଚର ସଂଚାରୀ    କଳି କଳୁଷ ହାରି
ବାରୁଣାବନ୍ତ ତାରୀ    ଦାରୁ ବ୍ରହ୍ମ ମୁରାରୀ
ମୋହମାୟା ଜଳଧି    ଜଳୁ କରିବା ପାରି ।। ୧ ।।

ଆଜନ୍ମ କାଳରୁ ଆଶ
ଶ୍ରୀ ପଦେ ରଖିଛି ଦାସ
ତୁରିତେ ଦୁରିତ ନାଶ    ଭାବଗ୍ରାହୀ ପୀତବାସ
ପ୍ରପଞ୍ଚ ଜନ୍ତୁରାଣ    ନେବ ପଞ୍ଚ ପରାଣ
ମାରି ମରମ ବାଣ    ଭାଙ୍ଗି ଦେବଟି ଟାଣ
ଶରଣାଗତ ଜନେ    ଉଦ୍ଧର ନାରାୟଣ
କରୁଣାକର ପ୍ରଭୁ    କରହେ ପରିତ୍ରାଣ ।। ୨ ।।







# ନାହିଁ କରି ଦେଲେ

*କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ*

ନାହିଁ କରି ଦେଲେ କଥାତ ସରନ୍ତା
କାହିଁକି ପିଟନ୍ତି ମଥା,
କେତେ ଆଉ କହ, ଦଦରା କାଛରେ
ଲଥୀ ପରେ ଦେବି ଲଥା
ଜଗନ୍ନାଥ !
ବୋଲାଉଛ ଦୀନବନ୍ଧୁ
ମୋହରି ବେଳକୁ ଶୁଖିଗଲା କିହେ
ଅଥଳ କରୁଣା ସିନ୍ଧୁ ? ।। ୧ ।।
ନୟନେ ଯମୁନା ଉଜାଣି ଖେଳୁଛି
ମନ ହେଲେ ଖେଳ ନାଆ
ସାରା ବରଷର ସବୁ ଋତୁ ଛାଡ଼ି
ଶ୍ରାବଣ ଧାରା ମୋ ସାହା
ଜଗନ୍ନାଥ !
ତେବେ ହେଲେ ମନୋରଥ
ପୁରିଲା ନାହିଁ ତ କଠୋର ପାଷାଣ
ପାଲଟିଲା ଚାରି ରଥ ।। ୨ ।।
ଶକତି ନ ଥିଲେ ବତାଇ ଦିଅ ହେ
କିଏ ସେ ଭରସା ଥାନ
କାହା କାନେ ଆଉ, ଶୁଣାଇବି ମୋର
ଜୀବନର ଦୁଃଖ ଗାନ
ଜଗନ୍ନାଥ !
ଶରଣ ରକ୍ଷଣ ବାନା
ଉଡ଼ାଇବ ନାହିଁ ଏ ଥର ଜଗତେ
କବିଚନ୍ଦ୍ର କରେ ମନା ।। ୩ ।।





# ବଡ଼ ଦେଉଳେ ବଡ଼ ଦିଅଁ

*କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ*

ବଡ଼ ଦେଉଳେ ବଡ଼ ଦିଅଁ କାହିଁକି ?
ବଡ଼ ବୋଲାଇ ଲାଜ ନାହିଁକି । ୦ ।

ବଡ଼ ଦିଅଁ ବଡ଼ ଦିଅଁ ପଡୁଛି ହୁରି (ହରିହେ)
ବଡ଼ତି କରିଛ କହ କାହିଁ କାହାରି ?
ଧରମ ପାପ ଯାହା-କଲି ଭୋଗିଲି ତାହା ।
ମୋ' କରମ ବଦଳ ନାହିଁତ ତୁମ ବଳ
କି ହେବ ହେ ପ୍ରଭୁ ପଣ ଥାଇକି ? । ୧ ।

ଆପଣା କରମ ଯେବେ ଭୁଞ୍ଜିବା ଲେଖା
କାହିଁକି ବୋଲାଅ ଦୀନଜନର ସଖା ?
କରମ ବଳ ଥିଲେ, ସୁଫଳ ଫଳେ ବଳେ
ଅଦଳ ବଦଳକୁ ନାହିଁକେ ଶୁଣିବାକୁ
ସୁଖରସାଥୀ ପରା ତମେ ମୁରଲୀ ଧରା
ରାଧା ମରିଛି ଗୁଣ ଗାଇକି । ୨ ।







# ମୋ' ବନ୍ଧୁ ନୋହିଲେ ଯେବେ ଗୋ

*କିଶୋର କବି ଶ୍ୟାମସୁନ୍ଦର ଦାସ*

ସେ ଜଗବନ୍ଧୁ, ମୋ' ବନ୍ଧୁ ନୋହିଲେ ଯେବେ ଗୋ,
ପ୍ରଭୁ ପଣେ ସାମରଥ ବୋଲି ସେ ତ କିପାଇଁ ଗଣିବି ଲବେ ଗୋ ।। ୦ ।।

ହୋଇ କାହା ଅଜା କାହାର ଭଣଜା କାହାର ଶଶୁର କାହା ଜୁଆଁଇ
ତାଡିଲେ ମାରିଲେ ସାରିଲେ ହାରିଲେ କରିଲେ ସେ ଅବା କିସ ମୋ ପାଇଁ
ଖାଇ ଭଜା ଖୁଦ କାହାକୁ ସମ୍ପଦ ଡାକି ଦେଲେ ସଖା ବୋଲିବା ଲୋଭେ ।। ୧ ।।

କାହାକୁ ସମୃଦି କଲେ ବାଦସାଧି, ଭାଇ ମାନ୍ୟ ଦେଲେ କାହାକୁ ସମ୍ପାଦି,
କାହାକୁ ବାନ୍ଧବ କରି ଗୀତା ଭାବ ସମଜାଇ କଥା ରଖିଲେ ଭବେ ।। ୨ ।।

କାହା ପୁତ୍ର ରୂପେ ବିହରିଲ ଗୋପେ, କାହିଁ ନଟବର ନାଗର ସ୍ୱରୂପେ
ତ୍ରିଲୋକ ମୋହିଲେ ମୋପାଇଁ ନୋହିଲେ କେଉଁ ଗୁଣେ ସମସରି କିଭାବେ ।। ୩ ।।





# ଜଣାଣ ଗୀତିକା

*ବୈକୁଣ୍ଠନାଥ ବ୍ରହ୍ମଚାରୀ*



ନୀଳଗିରିବାସୀ ମଣିମା ଜୟ ଜଗତନାଥ
ନିକୁଞ୍ଜବନ ଅଧୀଶ୍ୱର ଜୟ ଯଶୋଦା ସୁତ ।୧।
ନିରବଧି ଭକ୍ତେ କରନ୍ତି ତବ ନାମରେ ସ୍ତୁତି
ନେତ୍ରେ ଦରଶନ କରିଣ ନମସ୍କାର ଢ଼ାଳନ୍ତି ।୨।
ନବୀନ ନୀରଦ ସୁନ୍ଦର ନୀଳମାଧବ ତନୁ
ନିତି ନୂଆ ପରି ଦିଶଇ ଭୁଲି ନହୁଏ ମନୁ ।୩।
ନବ କଳେବର ଧରୁଛ ପୁଣ ଭକ୍ତଙ୍କ ପାଇଁ
ନନ୍ଦିଘୋଷେ ବିଜେ ହେଉଛ ବଡ ଦାଣ୍ଡରେ ଯାଇ ।୪।
ନାମ ଦେଇଛନ୍ତି ତୁମ୍ଭଙ୍କୁ ଭକ୍ତେ ନାନା ପ୍ରକାର
ନୀଚ ପତିତଙ୍କୁ ତାରିବା ଶ୍ରେଷ୍ଠ କାମ ତୁମର ।୫।
ନାହିଁ ଜ୍ଞାନ ଧ୍ୟାନ ଭଜନ ନ ଜାଣଇ ସୁକର୍ମ
ନେବ କି ନା ମୋତେ ଉଦ୍ଧରି କୁହ ପୁରୁଷୋତ୍ତମ ।୬।
ନାମ ମାତ୍ର ମୁଖେ ଗାଉଛି ଆନ ସବୁ ଉପେକ୍ଷି
ନିୟମ ନୀତି ନିଷ୍ଠାମାନ, ମନେ ନାହିଁତ ରଖି ।୭।
ନଟବର ଠାଣି ମୂରତି ନାଚୁ ମୋ'ର ନୟନେ
ନିବେଦନ କରେ ଏତିକି ମାତ୍ର ଛନ୍ଦା ଚରଣେ ।୮।
ନହେବ ନିର୍ଦ୍ଦୟ ପ୍ରଭୁହେ ଏ ହୀନ ଜନପ୍ରତି
ନେବ ଅନ୍ତକାଳେ ନିଶ୍ଚୟ ବଇକୁଣ୍ଠ ପ୍ରଣତି ।୯।









# ଅନାଥର ନାଥ

ଶ୍ରୀମତୀ ହରିପ୍ରିୟା ଦେବୀ

ଶରଣା ଗତକୁ ହରି ନ କଲେ ପାରି
ସରିତ ଗଲାଣି ସବୁ ନୟନ ବାରି ।। ୦ ।।
କିପରି ହେ ଦେବରାଜ
ଉଡ଼ିବ କିରତୀ ଧ୍ୱଜ
ଆଶ୍ରିତ ଜନରେ ନାଥ କଲେ ଏପରି ।। ୧ ।।

ଛନ୍ଦା ଚରଣର ତଳେ
ବନ୍ଧା ଯେହୁ କାଳେ କାଳେ
ସେ ପୁଣି ହୋଇଲା ଯଦି ପଥ ଭିକାରୀ ।। ୨ ।।

ଚକା ଡୋଳା ମହାବାହୁ
ବୁଡ଼ିଯାଏ ଚାହୁଁ ଚାହୁଁ
ଅନାଥର ନାଥ ନ ଶୁଣିଲ ଗୁହାରୀ ।। ୩ ।।





# ଚକା ଆଖି

*ଗୋବର୍ଦ୍ଧନ ମହାନ୍ତି*

ଚକା ଆଖି
ମୋ କଥା ମନେପଡୁ ନାହିଁକି ?
ପତିତପାବନ ବାନା ଉଡ଼େ ଦୂରେ କାହିଁକି ।। ଘୋଷା ।।

ଅଗାଧ ଜଳରେ ଗଜ
ଡାକିଲା ହେ ଦେବରାଜ
ପାଞ୍ଚାଳି ବିକଳ ବାଣୀ
କାନ ଡେରିଅଛ ଶୁଣି
ନାହିଁକି ଶ୍ରୁତି ଆତୁରି ମୋ କନ୍ଦନ ପାଇଁକି ।। ୧ ।।

ଶିରେ ଶିଖୀ ପୁଚ୍ଛ ଚୂଡ଼ା
ଗଳେ ଶୋହେ ପୀତଧଡ଼ା
ହୃଦରେ ଦୟଣା ମାଳୀ
ଲମ୍ବୁଅଛି କେରି କେରି
ମୁଁ ଡାକୁଛି ରଖରଖ କାନେ ଶୁଭୁ ନାହିଁକି ।। ୨ ।।

ଅଘା ବକା କେଶୀ କଂସ
ସମସ୍ତଙ୍କେ କଲ ବିନାଶ
ରାମରୂପେ ଅବତରି
ତାରିଲ ଗୌତମ ନାରୀ
ଶେଷେ ଖାଇ ପକାଇଲ ମାଣିକର ଦହିକି ।। ୩ ।।



# ନୀଳ ଶଇଳ ନିବାସୀ

ସେଖ୍ ବାକ୍କର ମହମ୍ମଦ

ନୀଳ ଶଇଳ ନିବାସୀ ଦେବ ଶ୍ରୀହରି
ତୁରୁ ଶୁଭେନା ଏ କି ଗରିବ ଗୁହାରି
ବଡ଼ ପାଚେରା ଘେରାଇ ବଡ଼ ଦେଉଳ ତୋଳାଇ
ବସିଛ ମଉନେ ଦାରୁଭୂତ ମୁରାରି ।। ଘୋଷା ।।
ଆତଙ୍କରେ ପଡ଼ି ଗଜରାଜ ଡାକିଲା ରଖ ହେ ଚତୁର୍ଭୁଜ
ଥାଇଣ ଲକ୍ଷେ ଯୋଜନେ ତା' ଡାକ ଶୁଣିଲ କର୍ଣ୍ଣେ
ମୋ' ବେଳକୁ କିମ୍ବା ହୁଅ ବଧିର ପରି ? ।। ୧ ।।
ଘୋର ବନେ ଡାକିଲା ମୃଗୁଣୀ ଦୂରେ ଥାଇ ପାରିଲ ତା' ଶୁଣି
ବରଷା ଥିଲାଟି କାହିଁ ପବନ ଆସିଲା ଧାଇଁ
ବ୍ୟାଧ ନାଶି ମୃଗୁଣୀକୁ କରିଲ ପାରି ।। ୨ ।।
ସୁଦାମାର ଦୁଃଖକଷ୍ଟ ହାରୀ ମୋର ଲୋଡ଼ାନାହିଁ ସେହିପରି
ଲୋଡ଼ା ତୋ ରଙ୍ଗପୟର ଆହେ ପ୍ରଭୁ ଚକ୍ରଧର
ଜଣାଯାଏ ଶୁଣ ତୁମ୍ଭେ ସୁଦୟା କରି ।। ୩ ।।
ସାଗର ସ୍ରୋତ ମୁଖରେ ମୁହିଁ ଭାସି ଯାଉଛି ରଥ ଗୋସାଇଁ
ଆତଙ୍କ ନାଶନ ବାନା ମୋ ପରେ ନୁହଁ ବିମନା
ନାବିକ ହୋଇଣ କୂଳେ ଲଗାଅ ତରୀ ।। ୪ ।।
ଦ୍ରୌପଦୀକୁ କୁରୁସଭା ତଳେ ଦୁଶା ବିବସ୍ତ୍ର କରିଲାବେଳେ
ସତୀର ଆତଙ୍କ ଜାଣି କୋଟି ବସ୍ତ୍ର ଦେଲ ଆଣି
କେତେ ବଡ଼ ଲଜ୍ୟାରୁ ଯା'ନେଲ ସୁଧାରି ।। ୫ ।।
ଯେତେ କୀର୍ତ୍ତି ରଖିଛ ଜଗତେ
ହେଜି ହେଜି ବା କହିବି କେତେ
ନ ଦେଖେ ପୋଥି ପୁରାଣ, ବାକର ମିଆଁ ଯବନ
ପ୍ରାଣଯାଉ ମୋର ମା' ଶାରଳା ସୁମରି ।। ୬ ।।





# ସବୁ ତୁମରି ଲୀଳା

*ଗୋଲୋକ ଚନ୍ଦ୍ର ମହାନ୍ତି*

ସବୁ ତୁମରି ଲୀଳା, ଚକାଡୋଳା ହେ
ଯାହାତ ଦେଉଛ, ତାହାତ ନେଉଛ,
ଜନେ ଜାଣିବାକୁ କରୁଛ ଖେଳା ।। ଘୋଷା ।।

ଦାନ ଦେବା ଛଳେ ବଳିକୁ ନାଶିଲ,
ବଳିଦାନେ କର୍ଣ୍ଣ ସୁତକୁ ଦେଲା
ଦେଇ ଦେଇ ଶେଷେ ଦାତା ହରିଶ୍ଚନ୍ଦ୍ର,
ମଶାଣି ଦୁଆରେ ପ୍ରେତ ଜଗିଲା ।। ୧ ।।

ଭାରତ ସମରେ ହାତ ପତାଇଲ
ଭୀମସତ ନିଜ ସୁତକୁ ଦେଲା
ଅସ୍ଥିଦେଇ ମଲା ଦଧୀଚି ମହର୍ଷି
ଆଉ କେଉଁ ଦାନ ବାକୀ ରହିଲା ।। ୨ ।।

ବିଜ୍ଞାନୀ ଧୀବର, ଧୋଇଲା ପୟର
ପରମ ପଦ ସଂପଦ ପାଇଲା
ଅଜ୍ଞାନ ଶବର ପେଷିତା ନାରାଚ
ଛନ୍ଦା ଚରଣରେ ଶରଣ ନେଲା ।। ୩ ।।

କି କଲା ଗରିବ, ହେ ଦୀନ-ବାନ୍ଧବ
ଦୀନ ଜନେ ଉଣା କରୁଣା ହେଲା
ଦୟାନିଧି ନାମ ବହିଛ କିପାଇଁ
ଭାସିଯାଏ ଦୀନଜନର ଭେଳା ।। ୪ ।।







# କୋଠ ଭୋଗଖିଆ

*କ୍ଷୀରୋଦ ଚନ୍ଦ୍ର ପୋଥାଳ*

କୋଠ ଭୋଗଖିଆ ମୋ ଚକା ଆଖିଆ
ଉଠ ହେ ପହଡ଼ ଭାଙ୍ଗି
ପଣ୍ଡା ପଡ଼ିହାରୀ କରନ୍ତି ଗୁହାରୀ
ହେବାକୁ ଚନ୍ଦନ ଲାଗି ।। ୦ ।।
ତୁଳସୀର ମାଳ ଦୟଣାର ଚୂଳ
ଭଲା ଧରି ଦେବଦାସୀ
ବଡ଼ ସିଂହାରକୁ ବୁଢ଼ା ସିଂହାରୀ ଯେ
ଉଭା ହୋଇଲେଣି ଆସି
ମଣିମା ମଣିମା ଡାକ ପଡୁଅଛି
ଛାମୁ ଦରଶନ ଲାଗି ।। ୧ ।।
ନିଦା ପଥର ହେ ନିଦକେ ଶୋଇଲ
କ୍ଷାଠିଏ ପଉଟୀ ଖାଇ
ଅନାଥ ଜନଙ୍କ ଡାକ ନ ଶୁଣୁଛ
ଜଗତର ନାଥ ହୋଇ
ଆରତୀ ବେଳ ଯେ ଗଡ଼ି ଯାଉଅଛି
ଉଠ ହେ ଛପନ ଭୋଗୀ ।। ୨ ।।
ପତିତପାବନ ବାନା ଉଡ଼ାଉଛ
ପତିତ ଉଦ୍ଧାର ପାଇଁ
ମୁଁ ଜଣେ ପତିତ କାନ୍ଦି କାନ୍ଦି ମରେ
ମୋ ଡାକ କି ଶୁଭୁ ନାଇଁ
ଏଡ଼େ ବଡ଼ ପଣ ବହି ଅଛ ପ୍ରଭୁ
କୁହ ତେବେ କାହା ଲାଗି ।। ୩ ।।





# ଆରେ ମୁଁ କ୍ଷେତ୍ର ଯିବି

## (ପୁରାତନ ରଚନା)

ଆରେ ମୁଁ କ୍ଷେତ୍ର ଯିବି ଆରେ ମୁଁ କ୍ଷେତ୍ର ଯିବି
ଗୋଡ଼ ଯୋଡ଼ିକ ଥାଇ ବୋଇଲେ
ସତ ମୋ ବଚନ ରାମା ସତ ମୋ ବଚନ
ଜଗନ୍ନାଥଙ୍କର ଶରଧା ବାଲି ଚାଲିବାକୁ ମନ
ମୁଁ କ୍ଷେତ୍ର ଯିବି ଆରେ ଶ୍ରୀକ୍ଷେତ୍ର ଯିବି
ଜଗନ୍ନାଥଙ୍କର ଶରଧା ବାଲି ନିତି ଚାଲୁଥିବି
ମୁଁ କ୍ଷେତ୍ର ଯିବି ଆରେ ... ।। ୧ ।।
ହାତ ଯୋଡ଼ିକ ଥାଇ ବୋଇଲେ
ସତ ମୋ ବଚନ ରାମା ସତ ମୋ ବଚନ
ଜଗନ୍ନାଥଙ୍କର ଗରୁଡ଼ ଖମ୍ବ କୁଣ୍ଢେଇବାରେ ମନ
ଆରେ ମୁଁ କ୍ଷେତ୍ର ଯିବି
ଜଗନ୍ନାଥଙ୍କର ଗରୁଡ଼ ଖମ୍ବ ନିତି କୁଣ୍ଢାଇଥିବି
ଆରେ ମୁଁ କ୍ଷେତ୍ର ଯିବି ।। ୨ ।।
ଆଖି ଯୋଡ଼ିକ ଥାଇ ବୋଇଲେ
ସତ ମୋ ବଚନ ରାମା ସତ ମୋ ବଚନ
ଜଗନ୍ନାଥଙ୍କର ଚକାଡ଼ୋଳା ଦେଖିବାରେ ମନ
ଆରେ ମୁଁ କ୍ଷେତ୍ର ଯିବି ।
ଜଗନ୍ନାଥଙ୍କର ଚକାଡ଼ୋଳା ନିତି ଦେଖୁଥିବି
ମୁଁ କ୍ଷେତ୍ର ଯିବି ।। ୩ ।।
କାନ ଯୋଡ଼ିକ ଥାଇ ବୋଇଲେ
ସତ ମୋ ବଚନ ରାମା ସତ ମୋ ବଚନ
ଜଗନ୍ନାଥଙ୍କର ଘଣ୍ଟା ମାଡ଼ ଶୁଣିବାକୁ ମନ
ମୁଁ କ୍ଷେତ୍ର ଯିବି
ଜଗନ୍ନାଥଙ୍କର ଘଣ୍ଟା ମାଡ଼ ନିତି ଶୁଣୁଥିବି
ଆରେ ମୁଁ କ୍ଷେତ୍ର ଯିବି ।। ୪ ।।







# ଆସିଥିଲି କାଳିଆ ତୋ ଦରଶନ ପାଇଁରେ

*ଅଲେଖ ବିଶ୍ୱାଳ*

ଆସିଥିଲି କାଳିଆ ତୋ ଦରଶନ ପାଇଁରେ
ତୋତେ ଛାଡ଼ି ଯିବାକୁ ମୋ ମନ ବଳୁ ନାହିଁରେ । ପଦ ।
ସାରା ଭୁବନର କାନ୍ତି ଦେଖିଲି ତୋ ରୂପରେ .... (୨)
ସାରା ଜୀବନର ଶାନ୍ତି ଲଭିଲି ତୋ ମନ୍ଦିରେ ... (୨)

ବିତି ଯାଉ ଏ ଜୀବନ ... ଓ ... ଓ ... ଓ
ତୋ ବଦନ ଚାହିଁରେ ... ତୋତେ ଛାଡ଼ି ଯିବାକୁ
ଥକା ନେବି ଚକା ଆଖି ଧାଇଁବିନି ମୋହରେ – (୨)
କରିଦେ ଭିକାରୀ ମୋତେ ଦୋ ଦେଉଳ ଦୁଆରେ ... (୨)
ଆନନ୍ଦେ ହେବି ମଗନ ତୋର ଗୀତ ଗାଇରେ ...

ଆସିଥିଲି କାଳିଆ ତୋ ଦରଶନ ପାଇଁରେ ... (୧)
ତୋତେ ଛାଡ଼ି ଯିବାକୁ ମୋ ମନ ବଳୁ ନାହିଁରେ ..... ।





# ଆହେ ଜଗନ୍ନାଥ ପୂରୁ ମନୋରଥ

*ସାରଦା ପ୍ରସନ୍ନ ନାୟକ*

ଆହେ ଜଗନ୍ନାଥ ପୂରୁ ମନୋରଥ
କରି ତୁମ ଗାଥା ଗାୟନ
ଆହେ ଚକାଡୋଳା ତୁମ ଲୀଳା ଖେଳା
ଦେଖୁଁ ଦିଅ ଦିବ୍ୟ ନୟନ ।

ଯୁଗେ ଯୁଗେ ହେଲ ଦଶ ଅବତାର
ଭକ୍ତଗଣେ ଦେଲ ଦର୍ଶନ
ନୀଳାଦ୍ରି ବିହାରୀ ତୁମ ରୂପ ଶିରୀ
କେ କରି ପାରିବ ବର୍ଣ୍ଣନ ।

ମହୋଦଧି ତଟେ ଶ୍ରୀକ୍ଷେତ୍ରର ଘଟେ
ଶ୍ରୀମନ୍ଦିର ତୁମ ଆସ୍ଥାନ
ଆହେ ମହାବାହୁ ଗାଇ ଦିନ ଯାଉ
ତୁମ ଯାନି ଯାତ୍ରା ପାର୍ବଣ ।

ବାର ମାସେ ତେର ପରବରେ ସାର
ଶ୍ରୀଗୁଣ୍ଡିଚା ଜଗବନ୍ଦନ
ହେ ଦାରୁ ଦେବତା ବିଜେ କର ରଥେ
ଭ୍ରାତା ଭଗ୍ନୀ ସାଥେ ଘେନିଣ ।

ଏହି ରଥଯାତ୍ରା ସାଥେ ତୁମ କଥା
କରୁଅଛୁ ପରିବେଷଣ
ବଡ଼ଦାଣ୍ଡ ଧୂଳି ଅଙ୍ଗେ ହୋଇ ବୋଳି
ପ୍ରଣମୁ ପତିତପାବନ ।







# ସଂଜ ସକାଳେ ତୁମ ଛବି ଖୋଜେ

*ସାରଦା ପ୍ରସନ୍ନ ନାୟକ*

ସଂଜ ସକାଳେ ତୁମ ଛବି ଖୋଜେ
ନୀର ଭିଜା ନୟନରେ, ହାୟ
ଜଗତର ନାଥ, ଆହେ ଜଗନ୍ନାଥ
ଆକୁଳ ଅନ୍ତରେ ଝୁରେ ... ମୁଁ
ସଂଜ ସକାଳେ ... ସଂଜ ସକାଳେ ।। ୦ ।।

ମାଗୁ ନାହିଁ ଧନ, ମାନ ସନମାନ
ମାଗୁ ନାହିଁ ମୁଁ ଯେ ହୀରା ନୀଳା ମୋତି
ମାଗିଥିଲେ ଯାହା, ଧ୍ରୁବ ପ୍ରହ୍ଲାଦ
ମାଗୁଛି ତହିଁରୁ ଦିଅ ମତେ କିଛି
କରୁଣା ସାଗର ନ କର ହେ ପର
ମନର ମରାଳ ଝୁରି ମରେ ।। ୧ ।।
ସଂଜ ସକାଳେ ତୁମ ଛବି ଖୋଜେ ନୀର ଭିଜା ନୟନରେ

ଗିରି ନଦୀ ବନ ବସନ୍ତ ପବନ
ଗଗନ ଜୋଛନା ତାରକା ତପନ
ସୁନୀଳ ସାଗର ଭରା ଉପବନ
ଝରଣାର ଅଙ୍ଗେ କଅଁଳ କଂପନ
ହସାଉଛ ସବୁ କନ୍ଦାଉଛ ମତେ
ପ୍ରଭୁ ହେ କାହିଁକି କୁହ ବାରେ ।। ୨ ।।
ସଂଜ ସକାଳେ ତୁମ ଛବି ଖୋଜେ ନୀର ଭିଜା ନୟନରେ





# ଆରତ ସୁରେ ବାରେ କରେ ମିନତିରେ

*ସାରଦା ପ୍ରସନ୍ନ ନାୟକ*

ଆରତ ସୁରେ ବାରେ କରେ ମିନତିରେ
ଚକାନୟନ ଚାହାଁ ମାଗେ ମାଗୁଣିରେ ।

କଳା କଳା ଦୁଇ ଆଖି ମନ କେତେ ଖୋଜିଲା
ଉଷାକାଳ ରବି ଛବି ମନେ ମନେ ହଜିଲା
ଆଖି ନାହିଁ ସାକ୍ଷୀ ନାହିଁ ସାଥି କାହିଁ ଝୁରେରେ ।

ନ ଦେଲେ ନ ଦିଅ ପଛେ ଆଖିରେ ମୋ ପରଶ
ସବୁରି ପରାଣ ପ୍ରଭୁ ନ ନିଭାଅ ହରଷ
ବିଲ ବନ ଗିରି ଶିରୀ କେତେ ରଙ୍ଗେ ଭରାରେ ।

ସବୁଜ ପତରେ ଧୀରେ ହାତ ତୁମେ ରଖିଲେ
ସବୁଜ ପଥରେ ଥରେ ପାଦ ତୁମେ ଥାପିଲେ
ନଈ ନାଳ ତୋଟାମାଳ ଫୁଲେ ଫୁଲି ହସେରେ ।

ଘର ଛାଡ଼ି ପରଦେଶେ ପରଦେଶୀ ପଥିକ
ନ ଭାବ ଏ ଭବେ ଅଛି ଜଣେ ଏକା ନାବିକ
ଭାଙ୍ଗେ ସେହି ଗଢ଼େ ସେହି ନୀଳଗିରି କନ୍ଦରେ
ଚକାନୟନ ଚାହାଁ ମାଗେ ମାଗୁଣିରେ ।







# ହୃଦକୁ କରିଛି ରତ୍ନ ସିଂହାସନ

ପ୍ରଫୁଲ୍ଲ କର

ହୃଦକୁ କରିଛି ରତ୍ନ ସିଂହାସନ, ମନ ମୋର ନୀଳାଚଳ
ବିଜେ କର ନାଥ, ଆହେ ଜଗନ୍ନାଥ, ଧନ୍ୟ ହେଉ ଜନ୍ମ ମୋର ।।

ଛାତିକୁ କରିଛି ବାଇଶି ପାହାଚ, ନୟନ ମୋ ସିଂହଦ୍ୱାର
ରସନା ମୋହର ଆନନ୍ଦ ବଜାର, ହସ ମୋର ଫୁଲହାର
ପ୍ରାଣକୁ କରିଛି ତୁମ ନଇବିଦ୍ୟ, ଅଶ୍ରୁ ମୋର ପୂଜା ଜଳ ।।

ମୋରକତ ବିନ୍ଦୁ ବଡ଼ ଦାଣ୍ଡରେଣୁ, ମଥା ମୋର ସ୍ୱର୍ଗଦ୍ୱାର
ବାର ମାସେ ତେର ଯାତ ହେଉଥିବ, ଏଇ ମାଟି ଦେହେ ମୋର
ଏ ଜୀବ ଛାଡ଼ିବ ତୁମେ ବସିଥିବ, ହୃଦୟ ବେଦିରେ ମୋର ।।





# ମହାବାହୁ ! ମତେ ଭାରି ଲାଜ ଲାଗେ

ପ୍ରଫୁଲ୍ଲ କର

ମହାବାହୁ !
ମତେ ଭାରି ଲାଜ ଲାଗେ – ଲାଜ ଲାଗେ
ମଲା ପରେ ମୁହିଁ, କେମିତି ଏ ମୁହଁ
ଦେଖାଇବି ତୁମ ଆଗେ
ମତେ ଭାରି ଲାଜ ଲାଗେ ।। ୦ ।।

ନିରିମଳ କରି ଜନ୍ମ ଦେଇଥିଲ, କଳଙ୍କ ହୋଇଲି ବୋଲି
ଯାହା କହିଥିଲି କରିବି ବୋଲି ମୁଁ, ସବୁତ ପାଶୋରି ଦେଲି
ତୁମେ ଦେଇଥିବା ଅମୃତ ହରାଇ
ବୁଲି ବୁଲି ବିଷ ମାଗେ – ମତେ ଭାରି ଲାଜ ଲାଗେ ।। ୧ ।।

ମୋ କର୍ମ ଫଳ ମୁଁ ଭୋଗିବି ନିଶ୍ଚୟ, ଏପରା ତୁମର ନୀତି
ବୈକୁଣ୍ଠ ଯିବାତ କପାଳରେ ନାହିଁ, ନରକ ମୋହର ଗତି
ନର୍କେ ଯଦି ମତେ ସ୍ଥାନ ନ ମିଳିବ
(ଏ) ଜୀବ ଯିବ କେଉଁ ଦିଗେ
ମତେ ଭାରି ଲାଜ ଲାଗେ ।। ୨ ।।

ଶୁଣିଛି ଶରଣ ପଶି ଶ୍ରୀଚରଣେ, ତରିଛନ୍ତି କେତେ ପାପୀ
କହନ୍ତି ଜଗତେ ତୁମ କୃପାସିନ୍ଧୁ, ବିସ୍ତାରିଛି ସର୍ବବ୍ୟାପୀ
ମୋ ପାପ ଭାରକି ସତେ ଏତେ ଭାରି
କ୍ଷମା ନାହିଁ ମୋର ଭାଗ୍ୟେ
ମତେ ଭାରି ଲାଜ ଲାଗେ ।। ୩ ।।







# ଦେଖ କେଡ଼େ
# ଶୋଭାବନ କଳାବଦନ

*ଶ୍ରୀମତୀ ଲୋକଜନନୀ ପଣ୍ଡା*

ଦେଖ କେଡ଼େ ଶୋଭାବନ କଳା ବଦନ
କଳା ବଦନରେ ଦୁଇ ଚକାନୟନ
ଚକା ନୟନେ ଦିଶୁଛି ତିନି ଭୁବନ... ॥୦॥

ମୁଖ କମଳକୁ ଆଖି କଳା ଭ୍ରମର
କଳା ଭ୍ରମର ଚୁମ୍ବଇ ରଂଗ ଅଧର
ରଙ୍ଗ ଅଧରୁ ଝରଇ ହସ ମଧୁର
କପାଳରେ ଟୋପି ଟୋପି ବାସ ଚନ୍ଦନ... ॥୧॥

କଟୀରେ ମଣି ମେଖଳା ପାଦେ ନୁପୂର
ଗଳାରେ କେରିକି କେରି ଦୟଣା ମାଳ ।
ହାତରେ ମୋହନ ବେଣୁ କାନେ କୁଣ୍ଡଳ
କଟୀତଟେ ଶୋହେ ଝିନ ପୀତ ବସନ... ॥୨॥





# ମୁଁ ତ ବଡ଼ ଦେଉଳର ପାରାରେ

*ଶୀର୍ଷାନନ୍ଦ ଦାସ କାନୁନ୍‌ଗୋ*



ମୁଁ ତ ବଡ଼ ଦେଉଳର ପାରାରେ ନୀଳଚକ୍ର ମୋର ଆଶରା
ଖରା ବରଷାକୁ ନାହିଁ ମୋ ଡର ଦେଉଳ ଉପରେ ମୋହରି ଘର
ମୁଁ ତ ବଡ଼ ଦେଉଳର ପାରାରେ ସାହା ମୋର କାଳିଆ ପରା
ମୁଁ ତ ବଡ଼ ଦେଉଳର ପାରାରେ ନୀଳଚକ୍ର ମୋର ଆଶରା ।

ଭୋକ ଲାଗି ଦକ ନାହିଁ ତ ମୋହର ନିର୍ମାଲ୍ୟ ଖାଏ ମୁଁ ଖୁଣ୍ଟି
ଅବଢ଼ା ତୋରାଣି ପିଉଥାଏ ପୁଣି ଶୁଖିଗଲେ ମୋର ତଣ୍ଟି
ଯେଉଁ ଅବଢ଼ାର କଣିକାଏ ପାଇଁ ବାଇଆ ଜଗତ ସାରାରେ
ମୁଁ ତ ବଡ଼ ଦେଉଳର ପାରାରେ ନୀଳଚକ୍ର ମୋର ଆଶରା ।

କେତେ ସାଧୁସନ୍ଥ ବୈଷ୍ଣବ ଭକତ ଦର୍ଶନ କରଇ ମୁହିଁ
ଦେଉଳେ ଦେଉଳେ ଘୁମୁରି ବୁଲଇ ଜଗନ୍ନାଥ ନାମ ଗାଇ
ସାତ ବଇକୁଣ୍ଠ ଚଉଦ ବ୍ରହ୍ମାଣ୍ଡ ସବୁ ଏହିଠାରେ ପରାରେ
ମୁଁ ତ ବଡ଼ ଦେଉଳର ପାରାରେ ନୀଳଚକ୍ର ମୋର ଆଶରା ।

ବାରମାସେ ତେର ଯାତରା ଦେଖଇ ଦେଉଳ ବେଢ଼ାରେ ଥାଇ
ପକ୍ଷୀଟିଏ ବୋଲି ଦୁଃଖ ନାହିଁ ମୋର ମଣିଷଠୁଁ ସୁଖୀ ମୁହିଁ
କେଉଁ ପୁଣ୍ୟ ବଳେ ଜନମ ନେଇ ମୁଁ ହୋଇଛି ଶ୍ରୀକ୍ଷେତ୍ର ପାରାରେ
ମୁଁ ତ ବଡ଼ ଦେଉଳର ପାରାରେ ନୀଳଚକ୍ର ମୋର ଆଶରା ।







# ଭଜି ଭଜି ତୋ ନାମ...

*ରାଧାନାଥ ଦାସ*

ଭଜି ଭଜି ତୋ ନାମ-ଚକାନୟନ
ମୋର ଯାଉ ଜୀବନ (ପ୍ରଭୁ)
ଦିନେ ନ ଦେଖିଲେ ତୋ'କଞ୍ଜାବଦନ
ମୋର ସରେନି ଦିନ ।। (ଘୋଷା)
ଏହି ପରାଣ ବିକି ଦେଇଛି ତୋତେ
ମୋହରି ହାନି ଲାଭ ସବୁ ତୋ'ହାତେ
ଗଙ୍କାର ମାଜି ମୋର ରୁକ୍ମଣୀ ଧନ-
ପର କରିବୁ ନାହିଁ ତୋତେ ମୋ'ରାଣ ।।୧।।

ଧନ ସମ୍ପତ୍ତି ମୋର ହୋଇବ କିସ
ଲୋଡ଼ା ନାହିଁତ ମୋର ସରଗ ବାସ
ହାତ ପତେଇ ମାଗି ଖାଇବି ତୋର
ମନ ଖୁସିରେ ମହାପ୍ରସାଦ ଅନ୍ନ ।।୨।।

ତୋର ଶ୍ରୀପଦେ ମୋର ଏହି ମିନତି
ବଡ଼ ଦେଉଳେ ବସିଥାଆ ସେମିତି
ଦେଖାଇ ସେହି ରଙ୍ଗଅଧର ହସ-
ଭକତଙ୍କର କିଣି ନଉଥା ମନ ।।୩।।





# ଷାଠିଏ ପଉଟି ଭୋଗରୁ ତୁମର

*ରାଧାନାଥ ଦାସ*

ଷାଠିଏ ପଉଟି ଭୋଗରୁ ତୁମର
କାଢ଼ି ତ ନେଇନି ହରି
କୁହ ତେବେ କେଉଁ ଅପରାଧେ ମୋତେ
କଲ ଦାଣ୍ଡର ଭିକାରୀ ।

ଭିକାରୀ କରିବା ଯେବେ ତୁମ ଇଚ୍ଛା
ନାହିଁ ମୋ ମନରେ ଦୁଃଖ
ସିଂହଦ୍ୱାର ବିନା ଆନ ଦୁଆରକୁ
ମାଗିଯିବି ନାହିଁ ଭିକ
ଆହେ ଇଚ୍ଛାମୟ ଇଚ୍ଛାରେ ତୁମରି
ଦିଅ ମୋର ଥାଳ ଭରି
କଲ ଦାଣ୍ଡର ଭିକାରୀ ।

ଜାଣି ଶୁଣି ଯେବେ ଚେଇଁ ଶୋଇଥିବ
କହିବି କାହାକୁ ଆଉ
ଆଉ କାହା ପାଶେ ପତାଇବି ହାତ
ତୁମେ ପ୍ରଭୁ ଥାଉଁ ଥାଉଁ
ଖାଲି ହାତେ ପଛେ ଫେରିଯିବି ପ୍ରଭୁ
ବଡ଼ଦାଣ୍ଡେ ଛାଡ଼ି ହୁରି
କଲ ଦାଣ୍ଡର ଭିକାରୀ ।







# ଭକ୍ତିଗୀତ

ରାଧାନାଥ ଦାସ

ଆଣିଥିଲ ପ୍ରଭୁ ଶ୍ରୀକ୍ଷେତ୍ରେ ବୁଲେଇ
ବଂଧୁ କରିଥିଲି ବୋଲି
ଦରଶନ ସାରି ଯାଉଚି ବାହୁଡ଼ି
ଏତିକି ମୁଁ କହିଗଲି -
ବଂଧୁ ନଯିବ ଭୁଲି ହେ ବଂଧୁ ନଯିବ ଭୁଲି
ଏମିତି ମୁଁ ଆସୁଥିବି ଶ୍ରୀକ୍ଷେତ୍ରେ ବୁଲି ।୦।

ଆନ କଥାରେ ମୋ ମନ ନାହିଁ ହେ ହରି
ଯେଉଁଠି ଥାଏ ମୋଠାରେ ଲାଗିବ ଡୋରି
ଆଷାଢ଼ ମାସେ ଶ୍ରୀକ୍ଷେତ୍ରେ ଆସିବି ଧାଇଁ
ବଡ଼ ଦାଣ୍ଡେ ତିନି ରଥ ଟାଣିବା ପାଇଁ
କିଛି ଲୋଡା ନାହିଁ - ଜଗତ ଗୋସାଇଁ
ଦୂର ବଂଧୁ ମୁହିଁ ଦୂରେ ରହିଲି ।୧।

ମରଣ ଆଗରୁ ପ୍ରଭୁ ଆଣିବ ଡାକି
ଦିନ ବିତାଇବି କଳା ଶ୍ରୀମୁଖ ଦେଖି
ପାଖ ଛାଡି ଯିବି ନାହିଁ କେଣିକି ପ୍ରଭୁ
ତୁମେ ପରା ମନକଥା ଜାଣିଚ ସବୁ
କରିବନି ପର - ଜଗତ ଠାକୁର
ଯାହା କହିବାର ଥିଲା ସବୁ କହିଲି ।୨।





# ଭକ୍ତିଗୀତ

*ରାଧାନାଥ ଦାସ*



ଭକତ ବିଦୁର ଶାଗଭଜା ଦେଇ
ତୋଷାଇ ପାରିଲା ମନ
ମୁଁ ଯେତେ ଦରବ ଯାଚିଲେ କାହିଁକି
ନଛୁଅଁ ହେ ଭଗବାନ ।୦।

ଦାସିଆ ବାଉରି କି ତପ କରିଲା
ତା'ଶ୍ରୀଫଳ ହସ୍ତେ ନେଲ
ବଂଧୁ ବୋଲି କହି ବନ୍ଧୁ ମହାନ୍ତିଙ୍କୁ
ଭୋଗ ଥାଳି ଯାଚି ଦେଲ
ତୁମେ ପରା ସେହି ଭାବ ବିନୋଦିଆ
ମୋ ପାଇଁ କିଆଁ ମଉନ ।୧।

ଦେଉଥିବି ମୁହିଁ ନେଉଥିବ ତୁମେ
ଏତେ ଭାଗ୍ୟ ମୋର କାହିଁ
ଅସରା ଲୁହରେ ଭରା ମୋ ପସରା
କି ଦେଇ ତୋଷିବି ମୁହିଁ
ତୁମ ଛଡାଫୁଲ ତୁଳସୀ ପାଇ ହେ
ଯାଉ ମୋର ଏ ଜୀବନ ।୨।









# ନିତି ବଡଦାଣ୍ଡେ ଚାଲିବାକୁ ପ୍ରଭୁ

*ପ୍ରଭାତୀ ପଣ୍ଡା*

ନିତି ବଡଦାଣ୍ଡେ ଚାଲିବାକୁ ପ୍ରଭୁ
କେତେ ଯେ ଚାହିଁଛି ମୁହିଁ
ମୋ ଘର ଅଗଣା ବଡଦାଣ୍ଡ ହେଲେ
ଦୁଃଖ ରହିବ ନାହିଁ,
ପ୍ରଭୁ ! କେତେ ଯେ ଚାହୁଁଛି ମୁହିଁ...(୦)

ତୋ ଅବଡା ଡାଲି ଖାଇବା ପାଇଁକି
ମନ ହୁଏ ହାଇଁ ପାଇଁ,
ମୋ ହାତ ରନ୍ଧା ବଗଡ଼ା ଭାତକୁ
ଅଭଡା କରି ଦେ ତୁହି ।
ମୋ ଠାକୁର ଘର ତୋ ବଡ଼ ଦେଉଳ
ଭାବୁଛି ଯିବ କି ହୋଇ...।୧।

ସେବକମାନଙ୍କ ଟାହୁଲିଆ କଥା
ଆଉ ପାରିବିନି ସହି
ମୋ ବାରି ପୋଖରୀ ନରେନ୍ଦ୍ର କରି ଦେ
ସ୍ନାନ କରୁଥିବି ମୁହିଁ
ମୋ ଗାଆଁ ମଶାଣି ସ୍ୱର୍ଗଦ୍ୱାର ହେଲେ
ଚଳନ୍ତା ମୋହର ଜୁଇ ।
ପ୍ରଭୁ ! କେତେ ଯେ ଚାହୁଁଛି ମୁହିଁ...।୨।



